# ଭାରତର ଶ୍ରେଷ୍ଠ ହାସ୍ୟଗଳ୍ପ

( ଉର୍ଦ୍ଦୁ )

ଜନାବ୍ ମୁଜ୍‌ତବା ହୋସେନ୍

ଅନୁବାଦ : ଇସ୍‌ମାଇଲ୍ ସୟେଦ ଆଜର
ଫତୁରାନନ୍ଦ



# ଭାରତର ଶ୍ରେଷ୍ଠ ହାସ୍ୟଗଳ୍ପ
## (ଉର୍ଦ୍ଦୁ)

ଜନାବ୍ ମୁଜତବା ହୋସେନ୍

ଅନୁବାଦ : ଇସ୍‌ମାଇଲ୍ ସୟେଦ ଆଜର
ଫତୁର୍‌ନନ୍ଦ



ଭରତର ଶ୍ରେଷ୍ଠ ହାସ୍ୟଗଳ୍ପ (ଉର୍ଦ୍ଦୁ)—ମୂଳଲେଖା : ଜନାବ୍ ମୁଜ୍ତବା ହୋସେନ୍, ଅନୁବାଦ : ଇସ୍ମାଇଲ୍ ସୟେଦ ଆଜର ଓ ଫତୁରାନନ୍ଦ, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଚ୍ଛଦ ଶିଳ୍ପୀ ଅଶୋକ, ମୁଦ୍ରଣ : ମା' ସନ୍ତୋଷୀ ପ୍ରେସ୍, କାଜିବଜାର, କଟକ-୧



**BHARATARA SRESTHA HASYA GALPA (URDU)—**
Author : Mujtaba Hussein, Translated by : Ismail Sayedi Azar & Faturananda, Publisher : Sahadev Pradhan, Friends' Publishers, Binodbehari, Cuttack-753002, Orissa (India), Cover design Shilpi Ashok, Printed at : Maa Santoshi Press, Kazibazar, Cuttack-1.

First Edition (F. P ) : 1996

PRICE : Rs. 35

# ଗ୍ରନ୍ଥସୂଚନା

କଟକର ବଶିଷ୍ଟ ଉର୍ଦ୍ଦୁ ହାସ୍ୟରସ ସ୍ରଷ୍ଟା ଶ୍ରୀଯୁକ୍ତ ଇସମାଇଲ୍ ସଫ୍ୱେଦ ଆଜର୍ ରାଜ୍ୟ ଅଭିଲେଖାଗାରରେ, ଡଗର ପତ୍ରିକା ସଂସ୍ପର୍ଶରେ ଆସି କ୍ରମେ ତା ପ୍ରତି ଆକୃଷ୍ଟ ହେଲେ । ଦିନେ ସେ ଡଗର ପ୍ରେସ୍‌କୁ ଆସି ଡଗର ବିଷୟରେ ମୋ ସହିତ ଆଲୋଚନା ଆରମ୍ଭ କଲେ । ହାସ୍ୟରସ ପରିବେଷଣରେ ଡଗରର ଅବଦାନ ବିଷୟରେ ସେ କେତେକ ସୁମନ୍ତବ୍ୟ ଦେଇ କହିଲେ ଯେ ହାସ୍ୟରସରେ ଉର୍ଦ୍ଦୁ ସାହିତ୍ୟ ଅତି ସମୃଦ୍ଧ । ଡଗର ମାଧ୍ୟମରେ ଉର୍ଦ୍ଦୁ ସାହିତ୍ୟର ହାସ୍ୟରସକୁ ଓଡ଼ିଆ ପାଠକମାନଙ୍କ ନିକଟରେ ପରିବେଷଣ କଲେ ଓଡ଼ିଆ ସାହିତ୍ୟ ବେଶ୍ ପରିପୁଷ୍ଟ ହୁଅନ୍ତା ଏବଂ ଓଡ଼ିଆ ହାସ୍ୟରସର ସ୍ରଷ୍ଟାମାନେ ମଧ୍ୟ ବହୁ ଭାବରେ ଉପକୃତ ହୁଅନ୍ତେ । ଏହି ପ୍ରସ୍ତାବ ମୋ ପକ୍ଷରେ ଅତି ଲୋଭନୀୟ ଥିଲା । କିନ୍ତୁ ଉର୍ଦ୍ଦୁର ଅନଭିଜ୍ଞତା ମୋତେ ପଛକୁ ଟାଣି ପକେଇଲା । ଇସ୍‌ମାଇଲ୍ ସାହେବ ଅନୁବାଦ ଦିଗରେ ମୋତେ ସମସ୍ତ ପ୍ରକାର ସାହାଯ୍ୟ ଦେବାକୁ ଅଙ୍ଗୀକାର କରିବାରୁ ମୁଁ ଅତି ଆନନ୍ଦରେ ତାଙ୍କ ପ୍ରସ୍ତାବରେ ସମ୍ମତି ଜଣାଇଲି । ତତ୍ପରଦିନ ସେ ମୁଜ୍‌ତବା ହୋସେନଙ୍କ ଗୋଟିଏ ଗପ ପଢ଼ି ବୁଝାଇ ଦେଲେ । ଏହା ମୋତେ ଏତେ ଆନନ୍ଦ ଦେଲା ଯେ ସଙ୍ଗେ ସଙ୍ଗେ ଅନୁବାଦ କାର୍ଯ୍ୟ ଆରମ୍ଭ କରିଦେଲି । ଧାରବାହିକ ଭାବରେ ଅନୁବାଦ କାର୍ଯ୍ୟ ଚାଲିଲା ଏବଂ ଡଗରରେ ପ୍ରକାଶ ପାଇବାକୁ ଲାଗିଲା । ଅନୁବାଦକ ରୂପେ ତାଙ୍କ ନାମ ଦେବାରୁ ସେ ଘୋର ପ୍ରତିବାଦ କଲେ ଏବଂ ତାଙ୍କ ନାମ ପରିବର୍ତ୍ତେ ମୋ ନାଆଁ ରଖିବାକୁ କହିଲେ । ସେ ଯୁକ୍ତି କଲେ ଯେ ତାଙ୍କ ବନ୍ଧୁମାନେ ତାଙ୍କୁ ଥଟ୍ଟା କରି କହିବେ "ହଇରେ ଗାଲୁଆ, ତୋତେ ତ ଓଡ଼ିଆ ଭଲ ଆସେ ନାହିଁ ତୁ ଲେଖିଲୁ କେମିତି ?" ମୁଁ ତାଙ୍କୁ କହିଲି—ମୋର ବନ୍ଧୁମାନେ ସେହିପରି ମୋତେ କହିବେ "ହଇରେ ଗାଲୁଆ, ତୋତେ ତ ଉର୍ଦ୍ଦୁ ଆସେ ନାହିଁ ତୁ ଉର୍ଦ୍ଦୁରୁ ଅନୁବାଦ କଲୁ କିପରି ?" ମୁଁ କହିଲି—ଆପଣଙ୍କ ନାଆଁ ରହୁ, ସେ କହିଲେ ନା,

ଆପଣଙ୍କ ନାମ ରହୁ । ବହୁବାର ଏହିପରି କୁହାକୁହି ହେବା ପରେ ମନେ ପଡ଼ିଗଲା—ଟ୍ରେନ୍‌ରେ ଉଠିଲା ବେଳେ ଦୁଇଜଣ ମୌଲବୀ ପହିଲେ ଆପ୍, ପହିଲେ ଆପ୍ କହୁ କହୁ ଗାଡ଼ି ଦୁହିଁଙ୍କୁ ଛାଡ଼ି ଚାଲିଯାଇ ଥିଲା । ଆମେ ଦୁହେଁ ପ୍ରକୃତିସ୍ଥ ହୋଇ ସ୍ଥିର କଲୁ ଯେ ଦୁହିଁଙ୍କ ନାମ ରହିବ । ସେହି ଅନୁଯାୟୀ କାମ ଆଗେଇ ଚାଲିଲା । ଆମ କାର୍ଯ୍ୟରେ ମୋର ସାନଭାଇ ଅଧ୍ୟାପକ ଶ୍ୟାମସୁନ୍ଦର ମିଶ୍ର ମଧ୍ୟ ସାହାଯ୍ୟ କଲା । ଇସ୍‌ମାଇଲ୍ ସାହେବ ଉର୍ଦ୍ଦୁ ପଢ଼ି କଥାଟା ବୁଝେଇ ଦିଅନ୍ତି । ମୁଁ ଆଉ ଶ୍ୟାମ ବାକ୍ୟଟିକୁ ସଜେଇ ସାଜେଇ ଲେଖୁ । ମୁଜତବା ହୋସେନ୍‌ଙ୍କ ଗଳ୍ପ ସବୁ ଯେତିକି ଯେତିକି ଅନୁବାଦିତ ହେଲା ତାଙ୍କ ପ୍ରତିଭା ନିକଟରେ ମୋର ମୁଣ୍ଡ ସେତିକି ସେତିକି ନଇଁ ଆସିଲା । ଆଧୁନିକ ଓଡ଼ିଆ ସାହିତ୍ୟରେ ହାସ୍ୟରସ ପ୍ରାରମ୍ଭିକ ଅବସ୍ଥାରେ ଅଛି । ଓଡ଼ିଆ ହାସ୍ୟରସ ସ୍ରଷ୍ଟାମାନେ ମୁଜ୍‌ତବାଙ୍କ ଉଚ୍ଚକୋଟୀର ହାସ୍ୟରସରୁ ଯଥେଷ୍ଟ ପ୍ରେରଣା ପାଇବେ । ନୂତନ ଆଲୋକର ସନ୍ଧାନ ପାଇ ସ୍ୱୀୟ ହାସ୍ୟରଚନାକୁ ମାର୍ଜିତ, ରୁଚିମନ୍ତ କରିବେ । ଏହି ଗଳ୍ପଗୁଡ଼ିକୁ ପୁସ୍ତକାକାରରେ ପ୍ରକାଶ କରିବାକୁ କଟକ ଲେଖକ ସହଯୋଗ ସମିତିର ସଭ୍ୟବୃନ୍ଦ ସାଗ୍ରହ ପଦକ୍ଷେପ ନେଇଥିବାରୁ ସେମାନେ ଓଡ଼ିଆ ପାଠକମାନଙ୍କ ନିକଟରେ ଅଭିନନ୍ଦନୀୟ ହେବେ, ଏଥିରେ ସନ୍ଦେହ ନାହିଁ ।

ଏହି ପୁସ୍ତକଟି ଭାରତୀୟ ଶ୍ରେଷ୍ଠ ହାସ୍ୟଗଳ୍ପ ସିରିଜ୍‌ର ପ୍ରଥମ ପୁସ୍ତକ । ଅନ୍ୟାନ୍ୟ ବିଖ୍ୟାତ ଉର୍ଦ୍ଦୁ ହାସ୍ୟରସ ସ୍ରଷ୍ଟାମାନଙ୍କର ଉଚ୍ଚକୋଟୀର ହାସ୍ୟଗଳ୍ପ ସବୁ ଏକତ୍ର କରି ଏହି ସିରିଜ୍‌ର ପୁସ୍ତକ ରୂପେ ପ୍ରକାଶିତ ହେବ ବୋଲି ସ୍ଥିର କରାଯାଇଛି । ଏହାପରେ ଭାରତର ସମସ୍ତ ଆଞ୍ଚଳିକ ଭାଷାରୁ ହାସ୍ୟଗଳ୍ପ ସଂଗୃହୀତ ହୋଇ କ୍ରମେ ପ୍ରକାଶ କରାଯିବ । ଆମର ଆଶା ଓଡ଼ିଆ ହାସ୍ୟରସ ସ୍ରଷ୍ଟାମାନେ ଏଥିରୁ ପ୍ରଚୁର ଲାଭବାନ ହେବେ । ପାଠକମାନଙ୍କୁ ଅନୁରୋଧ ସେମାନେ ଏହି ପୁସ୍ତକରୁ ହୋସେନଙ୍କ ପ୍ରତିଭାର ଯଥାର୍ଥ ମୂଲ୍ୟାଙ୍କନ କରି ତାଙ୍କ ନିକଟକୁ ସ୍ୱୀୟ ମତାମତ ପଠାଇବେ । ଏହାଦ୍ୱାରା ଲେଖକ ଓ ପାଠକ ଭିତରେ ଘନିଷ୍ଠ ସମ୍ବନ୍ଧ ସ୍ଥାପିତ ହେବ ।

**ଚତୁରାନନ**

# ଲେଖକଙ୍କ ତରଫରୁ

ଦୁଇବର୍ଷ ତଳର କଥା, ମୋର ପ୍ରିୟ ବନ୍ଧୁ ଇସ୍‌ମାଇଲ୍ ଆଜର ତାଙ୍କର ଏକ ପତ୍ରରେ ଫତୁରାନନ୍ଦ ମହାଶୟଙ୍କ ସମ୍ପର୍କରେ ଲେଖିଥିଲେ ଯେ ସେ ଓଡ଼ିଆ ଭାଷାର ଜଣେ ଲେଖକ ଓ ସାମ୍ବାଦିକ ଏବଂ ମୋର ହାସ୍ୟ ରଚନାଗୁଡ଼ିକୁ ସେ ପସନ୍ଦ କରନ୍ତି । ମୁଁ ଜଣେ ଭଦ୍ରଲୋକ ଭଳି ଇସ୍‌ମାଇଲ ଆଜରଙ୍କ ମାରଫତ୍‌ରେ ହିଁ ଫତୁରାନନ୍ଦ ମହାଶୟଙ୍କୁ ଧନ୍ୟବାଦ ଜଣାଇଲି । ମୋର ବିଶ୍ୱାସ ଥିଲା ଯେ ଧନ୍ୟବାଦ ଜଣାଇ ଦେବା ପରେ ସବୁ ହିସାବ ତୁଟିଯିବ ଓ ସ୍ନେହ ସମ୍ପର୍କ ସେଇଠି ଶେଷ ହୋଇଯିବ; କିନ୍ତୁ କିଛିଦିନ ପରେ ଇସ୍‌ମାଇଲ୍ ଆଜର୍‌ଙ୍କ ଚିଠି ଆସିଲା ଯେ ଫତୁରାନନ୍ଦ ମହାଶୟ ନିଜ ପତ୍ରିକାରେ ମୋର ରଚନାଗୁଡ଼ିକୁ ପ୍ରକାଶ କରିବା ପାଇଁ ଚାହୁଁଛନ୍ତି । ମୁଁ ଅନୁମତି ଦେଲି ଓ ପୁଣି ଧନ୍ୟବାଦ ଜଣାଇ ଦେଲି (ଜଣେ ଲେଖକ, ସେ ପୁଣି ଉର୍ଦ୍ଦୁ ଲେଖକ କେବଳ ଧନ୍ୟବାଦଟି ହିଁ ତ ଜଣାଇପାରେ !)। ଏହାପରେ ଫତୁରାନନ୍ଦଙ୍କ ପତ୍ରିକା ଡଗରରେ ମୋର ରଚନା ଲଗଲଗ୍ ପ୍ରକାଶ ପାଇବାରେ ଲାଗିଲା, ଏହି ରଚନା ସବୁର ପ୍ରକାଶ ଏହିପରି ହେଉଥିଲା କି ଇସ୍‌ମାଇଲ୍ ଆଜର ମୋର ରଚନା ସବୁ ପଢ଼ିଯାଉଥିଲେ ଓ ଫତୁରାନନ୍ଦ ମହାଶୟ ସେ ସବୁର ଅନୁବାଦ କରୁଥିଲେ । ମୋତେ କୁହାଯାଇଥିଲା ଯେ ଫତୁରାନନ୍ଦ ମହାଶୟ ଜଣେ ବୟୋବୃଦ୍ଧ ବ୍ୟକ୍ତି ଆଉ ତାଙ୍କ ଦୃଷ୍ଟିଶକ୍ତି ମଧ୍ୟ କ୍ଷୀଣ ହୋଇଯାଇଛି । କିନ୍ତୁ ଏତେ ବାଧାବିଘ୍ନ ସତ୍ତ୍ୱେ ମୋତେ ଓଡ଼ିଆ ଭାଷାରେ ପରିଚିତ କରାଇବା କାମ ସେ ଯେଉଁ ସ୍ନେହ ଶ୍ରଦ୍ଧା ସହ କରିଆସିଲେ ସେଥିରୁ ମୋର ବିଶ୍ୱାସ ହେଉଛି ଯେ ଫତୁରାନନ୍ଦ ମହାଶୟଙ୍କର ସ୍ନେହ ଓ ସାହିତ୍ୟ ବିଷୟରେ ସବୁ ବାଧାବିଘ୍ନର ସମ୍ମୁଖୀନ ହେବାପାଇଁ ସାମର୍ଥ୍ୟ ଅଛି । ଫତୁରାନନ୍ଦ ମହାଶୟଙ୍କ ସହ କେବେ ସାକ୍ଷାତ ହୋଇନାହିଁ; ଅବଶ୍ୟ ଥରେ ତାଙ୍କର ପତ୍ର ଆସିଥିଲା

ସେହି ପତ୍ରରେ ସେ ସ୍ନେହ ଓ ଶ୍ରଦ୍ଧାର ବନ୍ୟା ଛୁଟାଇ ଦେଇଥିଲେ । ଓଡ଼ିଆ ଭାଷାର ଏକ ମହାନ ସାମ୍ବାଦିକ ଓ ସାହିତ୍ୟିକର ହୃଦୟରେ ଉର୍ଦ୍ଦୁର ମୋଭଳି ଏକ ସାମାନ୍ୟତମ ଲେଖକ ପାଇଁ ଏତେ ସ୍ନେହଥିବା ଜାଣି ମୁଁ ଅଭିଭୂତ ହୋଇଗଲି । ପ୍ରେମର ଭାଷା ନା ହେଉଚି ଓଡ଼ିଆ ନା ଉର୍ଦ୍ଦୁ । ପ୍ରେମର ପ୍ରକାଶ ପାଇଁ ପୃଥିବୀର ସମସ୍ତ ଭାଷା ଯଥେଷ୍ଟ ନୁହେଁ ।

ଓଡ଼ିଆ ଭାଷାରେ ମୋ ରଚନା ସଂକଳନର ପ୍ରକାଶନ ପଛରେ ସଚ୍ଚିଦାନନ୍ଦଙ୍କ ସ୍ନେହ ଓ ଶ୍ରଦ୍ଧା ଏବଂ ଇସ୍‌ମାଇଲ୍ ଆଜରଙ୍କ ବନ୍ଧୁତ୍ୱର ହାତ ଅଛି । ମୁଁ ଏଇ ଦୁଇ ସହୃଦୟ ବ୍ୟକ୍ତିଙ୍କଠାରେ କୃତଜ୍ଞ ଏଇଥିପାଇଁ ଯେ ମୁଁ ଓଡ଼ିଆ ସାହିତ୍ୟିକ ମହଲରେ ଏଇ ଅବସରରେ ପରିଚିତ ହେଉଛି । ଭାରତୀୟ ଭାଷାଗୁଡ଼ିକ ପଛରେ ଭ୍ରାତୃତ୍ୱ ଓ ପାରସ୍ପରିକ ସମ୍ମାନହିଁ ଖାଣ୍ଟି ଭାରତୀୟ ସାହିତ୍ୟର ପ୍ରକୃତ ଚିତ୍ର ଆଙ୍କିପାରେ ।

ବର୍ତ୍ତମାନ ଯେତେବେଳେ ସଚ୍ଚିଦାନନ୍ଦ ମହାଶୟଙ୍କ ଦୟାରୁ ଏ ବହି ଛପା ହେଉଛି ସେତେବେଳେ ବି ମୁଁ ତାଙ୍କୁ ଧନ୍ୟବାଦ ଦେବା ଛଡ଼ା ଆଉ କିଛି କରିପାରୁନାହିଁ, କାରଣ ତାଙ୍କର ଏଇ 'ପ୍ରଚଣ୍ଡ ସ୍ନେହ' ଆଗରେ ନିଜକୁ ଅସହାୟ ଓ ସଙ୍କୁଚିତ ମନେ କରୁଚି ।

ଓଡ଼ିଆ ସାହିତ୍ୟିକ ବନ୍ଧୁ ମହୋଦୟଗଣ ଏହି ବହି ବିଷୟରେ ନିଜର ମତାମତ ଓ ସୁପରାମର୍ଶ ଅର୍ପଣ କଲେ ମୁଁ ସେମାନଙ୍କ ପ୍ରତି କୃତଜ୍ଞ ରହିବି ।

ସ୍ୱାଃ ମୁଜ୍‌ତବା ହୋସେନ୍

୮୦/୨୯ ମାଳବ୍ୟ ନଗର

୧ ଡିସେମ୍ବର ୧୯୭୯

ନୂଆଦିଲ୍ଲୀ-୧୧୦୦୧୭

# ସୂଚୀପତ୍ର





# ସିନେମା ଦେଖାରୁ ଭଗବାନ ରକ୍ଷା କରନ୍ତୁ

(ଖୋଦା ବଚୁଏ ଫିଲ୍ମ ଦେଖନେସେ)

ମୁଁ ସିନେମା, ବିଶେଷକରି ଭାରତୀୟ ସିନେମା ଦେଖିବାକୁ ଖୁବ୍ ଭୟକରେ, କାରଣ ଭାରତୀୟ ଫିଲ୍ମଗୁଡ଼ିକ ନା 'ଭାରତୀୟ' ନା 'ଫିଲ୍ମ'। ଏଥିପାଇଁ ଯଦି ମୋତେ କିଏ ଫିଲ୍ମ ଦେଖିବାକୁ ଡାକେ ତ ମୁଁ ତା' ପାଦତଳେ ପଡ଼ିଯାଏ ଓ କାକୁତିମିନତି କରି କହେ, "ଭାଇ ମୁଁ ଏପରି କଅଣ ଦୋଷ କଲି ଯେ ମୋତେ ଫିଲ୍ମ ଦେଖିବାକୁ ଟାଣୁଚ ? ମୁଁ ତ ତୁମକୁ ଆଜି ପର୍ଯ୍ୟନ୍ତ ବନ୍ଧୁ ବୋଲି ଭାବି ଭାବି ଆସିଚି । ତେବେ ମୋର କେଉଁ ଦୋଷରେ ମୋତେ ତିନି ଘଣ୍ଟାର 'କଠିନ କାରାଦଣ୍ଡ' ଭୋଗେଇବାକୁ ଚାହୁଁଚ ? ମୋତେ ଦଣ୍ଡ ଦେବାକୁ ଚାହୁଁଚ ତ ଫାଶି-କାଠ ଉପରକୁ ଚଢ଼ାଇଦିଅ ପଛକେ, ଫିଲ୍ମକୁ ନିଅ ନାହିଁ । କାହିଁକି ନା ଫାଶିକାଠ ଉପରେ ମଣିଷର ଜୀବନ ଚଟ୍ କରି ଚାଲିଯାଏ କିନ୍ତୁ ଫିଲ୍ମ ଦେଖିଲାବେଳେ ମଣିଷ ଶ୍ୱାସରୁଦ୍ଧ ହୋଇଯାଉଥାଏ କିନ୍ତୁ ସେ ମରେନି । ଏ ଅବସ୍ଥା ଅତି କଷ୍ଟଦାୟକ ହୁଏ ।"

ଆପଣ ବିଶ୍ୱାସ କରନ୍ତୁ, ଯଦି କୌଣସି ଖରାପ ଫିଲ୍ମ ବାହାରେ, ତେବେ ମୁଁ ତାହାର ଅସଂଖ୍ୟ ଟିକଟ କିଣି ମୋ ଶତ୍ରୁମାନଙ୍କ ପାଖକୁ ପଠାଇ ଦିଏ । ଶତ୍ରୁଙ୍କ ଉପରେ ପ୍ରତିଶୋଧ ନେବାର ଏହା ସବୁଠୁ ସହଜ ଉପାୟ । ଏତିକି ନୁହେଁ; ମୁଁ ଯଦି କାହା ଉପରେ ରାଗେ, ତେବେ ତାକୁ ଗାଳିଦେବା ପାଇଁ ଭାରତୀୟ ଫିଲ୍ମର ହିଁ ସାହାଯ୍ୟ ନିଏ । ମୁଁ ତାକୁ କହେ "ଭଗବାନ୍ ତତେ ଓ ତୋ ପିଲାପିଲି

ସମସ୍ତଙ୍କୁ 'ବାଗଦାଦ୍‌କା ଶେର' ଫିଲ୍ମ ଦେଖାନ୍ତୁ । ତୁ ହେଉଚ୍ଛି 'ଡାକୁ ମାନ ସିଂ', ତୁ 'ବନ୍ଦ ଚମିଜ୍', ତୁ 'ଜଙ୍ଗଲି', ତୁ 'ପକେଟମାର' ଆଉ ତୁ 'ଗୁନାହୋଁ କା ଦେବତା' ଇତ୍ୟାଦି ଇତ୍ୟାଦି ।" ଏହାର ଅର୍ଥ ଆପଣ ଭାବନ୍ତୁ ନାହିଁ ଯେ ମୁଁ ଆଜ ପର୍ଯ୍ୟନ୍ତ କୌଣସି ଫିଲ୍ମ ଦେଖିନାହିଁ । ମୁଁ ମୋର ସ୍କୁଲ ଜୀବନରେ ଏପରି ଅନେକ ଫିଲ୍ମ ଦେଖିଚି, ଯାହାର ବିଷୟବସ୍ତୁ ପାଠ୍ୟପୁସ୍ତକରେ ଥିଲା । ଉଦାହରଣତଃ ଇତିହାସ ପରୀକ୍ଷାରେ ସଫଳ ହେବା ପାଇଁ ମୁଁ 'ସିକନ୍ଦର ଏ ଆଜାମ୍' 'ପୃଥ୍ୱୀରାଜ ଚୌହାନ' ଓ 'ମୋଗଲ ଏ ଆଜାମ' ଏଭଳି ଫିଲ୍ମ ସବୁ ଦେଖିଥିଲି । କିନ୍ତୁ ଏ ଫିଲ୍ମ ଦେଖିବା ପରେ ଯେତେବେଳେ ପରୀକ୍ଷା ଦେଇ ସାରିଲି, ସେତେବେଳେ ଇତିହାସ ପରୀକ୍ଷା ଖାତାର ଭୂଗୋଳଟା ବଦଳିଗଲା । ମୁଁ ଫିଲ୍ମର ସବୁ ସଂଳାପ ପରୀକ୍ଷା ଖାତାରେ ଲେଖି ଦେଇଥିଲି । ଆଉ 'ମହାନ୍ ଆକବର' ଙ୍କ ବିଷୟରେ ଏହା ବି ଲେଖିଥିଲି ଯେ ମହାନ୍ ଆକବରଙ୍କ ଅସଲ ନାଁ ଥିଲା 'ପୃଥ୍ୱୀରାଜ କପୁର' । ମହାନ୍ ଆକବରଙ୍କ ତିନୋଟି ପୁଅ ଥିଲେ । ସେମାନଙ୍କ ନାଁ ରାଜକପୁର, ଶମ୍ମିକପୁର ଓ ଶଶୀକପୁର । ମହାନ୍ ଆକବର ଖୁବ୍ ଭଲ ଅଭିନେତା ଥିଲେ କିନ୍ତୁ 'ଅନାରକଲି' ଥିଲା ତାଙ୍କଠାରୁ ବି ଭଲ ଅଭିନେତ୍ରୀ ।

ପରୀକ୍ଷା ଫଳ ଜଣାପଡ଼ିବାରୁ ମୋ ଅବସ୍ଥା କୌଣସି ଏକ ରୋମାଣ୍ଟିକ ଫିଲ୍ମର ନାୟକ ଭଳି ହୋଇଗଲା, ଯେ କି ପ୍ରେମ ପ୍ରକାଶ କଲାବେଳେ ନିଜ ଚେହେରାକୁ ଏପରି କରିଦିଏ, ଯେପରିକି ସେ ଜଙ୍ଗଲିଟିଲ ପିଇଦେଇଚି କିମ୍ବା ତା ପେଟ ଦରଜ ହେଉଛି । ମୋର ଏ ଅବସ୍ଥା ବହୁତ ଦିନ ପର୍ଯ୍ୟନ୍ତ ରହିଲା । ମୋତେ ଜଣାପଡ଼ିଗଲା ଯେ ଏ ସବୁ ଦୁରବସ୍ଥା ଫିଲ୍ମ ଦେଖିବାରୁ ହେଲା । ମୁଁ ଯଦି ଫିଲ୍ମ ଦେଖି ନଥାନ୍ତି, ସମ୍ଭବତଃ କୌଣସି ଇତିହାସ ବହିରେ ମୋର ଚର୍ଚ୍ଚା ହୋଇଥାନ୍ତା । କିନ୍ତୁ ଏସବୁ ସତ୍ତ୍ୱେ ମୋର ଫିଲ୍ମ ଦେଖିବା ଅଭ୍ୟାସ ଗଲା ନାହିଁ । ମୋର ଭଲକରି ମନେ ଅଛି 'ପକେଟମାର' ଫିଲ୍ମ ଦେଖିବା ପାଇଁ ମୁଁ ମୋ ବାପାଙ୍କ ପକେଟମାରୁ କରିଥିଲି । 'ହଣ୍ଟରବାଲି' ଦେଖି ବାପାଙ୍କଠାରୁ ହଣ୍ଟର ମାଡ଼ ଖାଇଥିଲି । 'କାଞ୍ଚ କି ଚୁଡ଼ିଆଁ'

ଫିଲ୍ମ ଦେଖିବା ପାଇଁ ମା'ଙ୍କର ସୁନା କାଚ ବନ୍ଧକ କରି ଦେଇଥିଲି । 'ସମ୍ବାଦ' ଫିଲ୍ମ ଦେଖିବାକୁ ଯାଇ, ଟିକଟ ଘରର ଧାଡ଼ି ଭିତରେ ଚାପି ହୋଇ ହୋଇ ବଞ୍ଚିଗଲି । 'କର୍ଜ' ଫିଲ୍ମ ଦେଖିବାକୁ କରଜ କରିଥିଲି । ଅବିବାହିତ ଥିବା ପର୍ଯ୍ୟନ୍ତ ଫିଲ୍ମ ଦେଖିବାରେ ଅଧିକାଂଶ ସମୟ କଟୁଥିଲି । ଏହି ସବୁ ଫିଲ୍ମ ଦେଖି ଅନେକ ସମୟରେ ମୋର ଇଚ୍ଛା ହେଉଥିଲି ଯେ, ମୋର ବି ଜଣେ ନାୟିକା ଥାଆନ୍ତା, ଯାହାର ବାପା ଲକ୍ଷପତି ହୋଇଥାନ୍ତା ଆଉ ମୁଁ ତା' ବାପାର କାରଖାନାରେ ଶ୍ରମିକ ହୋଇଯାଆନ୍ତି ଓ ପଦୋନ୍ନତି ପାଇ ପାଇ ତାର ଜୋଇଁ ହୋଇ-ଯାଆନ୍ତି । କାରଣ ଫିଲ୍ମ 'କାରଖାନା'ମାନଙ୍କରେ ହିଁ ଶ୍ରମିକର ପଦୋନ୍ନତି ହେଲେ, ସେ ଜୋଇଁ ହୋଇଯାଏ । ପୁଣି ଏପରି ସୁଯୋଗ ଆସନ୍ତା, ଯେତେବେଳେ କି ମୋ ନାୟିକାର ଜୀବନ ରକ୍ଷା ପାଇଁ ମୁଁ ସମୁଦ୍ରକୁ ଡେଇଁ ପଡ଼ନ୍ତି (ଯଦିଓ ମୋତେ ପହଁରା ଆସେନି) । ଆମର ଜଣେ ଭିଲେନ ବି ଥାଆନ୍ତା । ତାକୁ ସତର୍କ କରାଯାଇଥା'ନ୍ତା ଯେ ମୁଁ ତାକୁ ଯେତେଇଚ୍ଛା ସେତେ ମୁଥିମାରିଲେ ମଧ୍ୟ ସେ ତା ବଦଳରେ ମୋତେ ମୁଥି ମାରନ୍ତା ନାହିଁ । ପୁଣି ଭଗବାନଙ୍କର ଏପରି କରଣି ହୁଅନ୍ତା ଯେ ମୋ ନାୟିକାର ବାହାଘର ଭିଲେନ ସହ ସ୍ଥିର ହୁଅନ୍ତା ଓ ଠିକ୍ ବାହାଘର ବେଳେ ମୁଁ ମଣ୍ଡପ ପାଖରେ ପହଞ୍ଚି ଘୋଷଣା କରି ଦିଅନ୍ତି "ବନ୍ଦକର ! ଏ ବାହାଘର ହୋଇପାରିବ ନାହିଁ ।" ମୋ ସାଙ୍ଗରେ ବହୁତ ପୋଲିସବାଲା ଥାଆନ୍ତେ ଆଉ ପୋଲିସର ତତ୍ତ୍ୱାବଧାନରେ ମୁଁ ସେ ନାୟିକାକୁ ଘରକୁ ନେଇ ଆସନ୍ତି । କାରଣ ଫିଲ୍ମରେ ପୋଲିସ ସାହାଯ୍ୟ ବିନା କୌଣସି ବାହାଘର ହୋଇପାରେନି । ସେଠାରେ ପୋଲିସର ଏକମାତ୍ର କାମ ହୁଏ ନାୟକ ସହ ନାୟିକାର ବାହାଘର କରେଇଦେବା । ନହେଲେ ପୋଲିସ ବିଭାଗ ରଖି ଲାଭ କଣ ? ସତ କହିବାକୁ ଗଲେ ଆମ ଫିଲ୍ମରେ ଗୋଟିଏ କଥା ସତ— ତାହା ହେଉଛି ହତ୍ୟାକାଣ୍ଡ ଘଟିଯିବା ପରେ ଓ ଲୋକଙ୍କ ପଞ୍ଜରା ହାଡ଼ ଭାଙ୍ଗିଯିବା ପରେ ପୋଲିସ ସିପାହୀ ହୁଇସିଲ ବଜାଇ ଆସନ୍ତି ଓ ନାୟକ ପାଖରେ ଠିଆହୋଇ ଫଟୋ ଉଠାଇବାକୁ ଦିଅନ୍ତି ।

ସଂକ୍ଷେପରେ, ମୋ ମନରେ ଏକ ଇଚ୍ଛାଥିଲି ଯେ ମୋର ବାହାଘର ପୋଲିସ ସାହାଯ୍ୟରେ ହୁଅନ୍ତା, କିନ୍ତୁ ସେପରି ହୋଇ ପାରିଲି

ନାହିଁ । ନାଗ୍ପୁର ହୋଇ ମୁଁ ଏପରି ଏକ ଝିଅ ବାହାହେଲି, ଯାହାର ରୂପ କୌଣସି ଫିଲ୍ମର ଏକ୍‌ସ୍‌ଟ୍ରା ଗାର୍ଲ ପାଇଁ ମଧ୍ୟ ଉପଯୁକ୍ତ ନୁହେଁ, କିନ୍ତୁ ମତେ କ'ଣ ଜଣା ଥିଲି ଯେ ଏଇ ଏକ୍‌ସ୍‌ଟ୍ରା ଗାର୍ଲ ବି ନିଜକୁ ନାୟିକା ବୋଲି ଭାବୁଛି । ମତେ ପରେ ଜଣାପଡ଼ିଲି ଯେ ସେ ବି ବହୁତ ସ୍ୱପ୍ନ ଦେଖୁଥିଲି । ତା ମନରେ କେବେ କେବେ ଏପରି ଆଶା ଜାଗୁଥିଲି ଯେ, କେହି ତାକୁ ସମୁଦ୍ରରେ ବୁଡ଼ିଯିବାରୁ ରକ୍ଷାକରୁ, କେହି ପୋଲିସ ତତ୍ତ୍ୱାବଧାନରେ ତାକୁ ବାହାହେଉ । କିନ୍ତୁ ସମସ୍ତ ଗୁଳି-ଯାଇଥିଲି, କାହିଁକି ନା ଆମର ବାହାଘର ତ ହେଇଗଲି । ସିଏ ଏବେ ବି ସବୁବେଳେ ମୋ ସହ ଝଗଡ଼ା କରେ ଯେ ମୁଁ କାହିଁକି ତାକୁ ବାହାଘର ପୂର୍ବରୁ ସମୁଦ୍ରରେ ବୁଡ଼ିଯିବାରୁ ବଞ୍ଚେଇଲି ନାହିଁ । ଆଜି ମୁଁ ତାକୁ ବୁଝେଇ କରି କହେ "ହେ ମୋ ପୁରୁଣା ସ୍ୱପ୍ନର ପୁରୁଣା ରାଣୀ, କାହିଁକି ଉଦାସ ହେଉଚ । ମୁଁ ତମକୁ ଏବେ ବି ସମୁଦ୍ରରୁ ବୁଡ଼ିଯିବାରୁ ରକ୍ଷାକରି ପାରିବି । ବିଶ୍ୱାସ ନହେଉଚି ତ ଏବେ ମୋ ସାଙ୍ଗରେ ଗୁଲି ଆଜି ସମୁଦ୍ରକୁ ଲମ୍ଫ ଦେଇ ଦେଖ ।" ଉତ୍ତରରେ ମୋ ସ୍ତ୍ରୀ କହନ୍ତି, "ଆଜି ମୁଁ ତୁମ କଥାରେ ଯିବିନି । ଏସବୁ ତୁମର ଷଡ଼ଯନ୍ତ୍ର, ମୁଁ ଜାଣେ । ଯଦି ମୁଁ ସମୁଦ୍ରକୁ ଡେଇଁପଡେ, ତେବେ ତୁମେ କୂଳରେ ଠିଆହେଇ ମୋ ବୁଡ଼ିବାର ଖେଳ ଦେଖୁଥିବ । କାହିଁକି ନା ତମେ ଏବେ ମୋଠାରୁ ମୁକ୍ତ ଚାହୁଁଚ ।"

ମୋର ବିଶ୍ୱାସ ହେଉଚି ସତରେ ଯଦି ମୋ ସ୍ତ୍ରୀ ଏବେ ସମୁଦ୍ରକୁ ଡେଇଁ ପଡ଼ନ୍ତି ତେବେ ମୁଁ ତାକୁ ବଞ୍ଚେଇବି ନାହିଁ, କାରଣ ବାହାଘର ପୂର୍ବରୁ କେଉଁ ଝିଅକୁ ବୁଡ଼ିବାରୁ ରକ୍ଷା କରିବାର ମଜା ଅନ୍ୟ ପ୍ରକାର । ଭଲି ଆଜି ପର୍ଯ୍ୟନ୍ତ କେହି ନିଜ ସ୍ତ୍ରୀକୁ ବୁଡ଼ିବାରୁ ବଞ୍ଚେଇଚି ।

ମୁଁ ଏତେ ଓଲି ନୁହେଁ କି ସ୍ତ୍ରୀ ବି ଏତେ ଓଲି ନୁହନ୍ତି ଯେ ମୋ କଥାରେ ବିଶ୍ୱାସ କରିବେ ।

ପୋଲିସ ତତ୍ତ୍ୱାବଧାନରେ ଯେ ମୋର ବିବାହ ହୋଇନି ଏହା ଠିକ୍; କିନ୍ତୁ ବିବାହ ପରେ ଅସଂଖ୍ୟ ଥର ଏପରି ସୁଯୋଗ ଆସିଥିଲି, ଯେତେବେଳେ କି ଅବସ୍ଥା ଦେଖି ମୋର ପୋଲିସକୁ ଡାକିବା ଉଚିତ

ଥିଲି । ମୋର ଶକ୍ତି ଥିଲେ ଦିନ ରାତି ମୋ ଘରେ ପୋଲିସ ପହରା ରଖନ୍ତି, କାରଣ ଚବିଶଘଣ୍ଟା କାଳ ଆମ ଦିହିଁଙ୍କ ଭିତରେ କୌଣସି ନା କୌଣସି ବିଷୟରେ କଳି ହୁଏ, ଆଉ ଏଇ କଳି ପରେ ପରେ ଘରର ସବୁ ଆସବାବପତ୍ର ମୋର ଅନୁସରଣ କରି ରାସ୍ତା ଉପରକୁ ପଳେଇ ଆସନ୍ତି ।

ଏ ସବୁ ଏଇଥିପାଇଁ ହେଉଛି ଯେ ମୁଁ ଓ ମୋ ସ୍ତ୍ରୀ ବିବାହ ପୂର୍ବରୁ ଅଲଗା ଅଲଗା ଅନେକ ଫିଲ୍ମ ଦେଖିଛୁ । ମୁଁ ମୋ ପାଇଁ ଏକ 'ନାୟିକା'ର ସ୍ୱପ୍ନ ଦେଖିଥିଲି; ଆଉ ମୋ ସ୍ତ୍ରୀ ନିଜ ପାଇଁ ଏକ 'ନାୟକ'ର ସ୍ୱପ୍ନ ଦେଖିଥିଲେ । ଫଳ ଏଇଆ ହେଲା ଯେ ବିବାହ ପରେ ମୁଁ ତାଙ୍କୁ 'ନାୟିକା' ଓ ସେ ମୋତେ 'ନାୟକ' ଭଳି କରିବାର ଚେଷ୍ଟା ଆରମ୍ଭ କରିଦେଲେ । ସବୁ କଳି ଏଇଥିପାଇଁ ।

ମୁଁ ତାଙ୍କୁ 'ସାଧନା' କରିଦେବାକୁ ଚାହୁଁଥିଲି । ସେଥିପାଇଁ ଦିନେ ତାଙ୍କ ବାଳକୁ ସାମନାରୁ କାଟିଦେଲି । ସେଥିରେ ସେ ମୋ ଉପରେ ରାଗିଗଲେ ଓ କହିଲେ, "ପ୍ରେମ କରୁଚ ସାଧନାକୁ ଆଉ ବାଳ କାଟୁଚ ମୋର । ଯଦି ସାଧନାକୁ ତୁମର ଏତେ ପସନ୍ଦ, ତେବେ ମୋତେ କାହିଁକି ବାହା ହେଉଥିଲ ? ମୁଁ ଏଥରକ ଚୁପ୍ ରହିବି ନାହିଁ । ମୁଁ ବି ତୁମକୁ ଏଥରକ ମୋ 'ହିରୋ' କରିଦେବି ।" ଏଇଯା କହି ସେ କଇଁଚି ନେଇ ଆସିଲେ ଆଉ ମୋର ବାଳ ମଧ୍ୟ ସାମନାରୁ କାଟି କାଟିଦେଲେ । ମୁଁ ଚିତ୍କାର କରି କହିଲି "ଏ କ'ଣ କରୁଚ ?"

ସେ କହିଲେ "କିଛି ନାହିଁ, ମୁଁ ତୁମକୁ ଦିଲ୍ଲୀପକୁମାର କରି ଦେଉଚି । 'ଗଙ୍ଗା ଯମୁନା'ରେ ଦିଲ୍ଲୀପକୁମାରର ବାଳ ତ ଏଇପରି ।"

ଏହାପରେ ମୋତେ ଏମିତି ନିର୍ଦ୍ଦେଶ ଦିଆଗଲା ଯେ ଯାହାକୁ ମୁଁ ଦିଲ୍ଲୀପକୁମାର ପରି ଚାଲେ, ଦିଲ୍ଲୀପକୁମାର ପରି ହସେ, ଦିଲ୍ଲୀପ-କୁମାର ପରି କଥାବାର୍ତ୍ତା କରେ, ଦିଲ୍ଲୀପକୁମାର ପରି କାଶେ ଦିଲ୍ଲୀପ-କୁମାର ପରି ସିଗ୍ରେଟ୍ ପିଏ, ଏପରିକି ବେମାର ପଡ଼ିଲେ ଦିଲ୍ଲୀପକୁମାର ପରି କୁନ୍ଥାଏ ।

ଏହାପରେ ମୋର ସବୁ କାର୍ଯ୍ୟକଳାପ ଉପରେ କଡ଼ା ଦୃଷ୍ଟି ଦିଆଗଲା । ମୁଁ ଦିଲ୍ଲୀପକୁମାର ବଦଳରେ ମନୋଜକୁମାର ପରି କାଣିଦେଲି ତ, ମୋ ଉପରେ ଗାଳି ବର୍ଷିଯାଏ । ଦିନେ ମୁଁ ଭୁଲରେ ରାଜକପୁର ପରି ସିଗ୍ରେଟ ପିଉଥିଲି । ମୋ ସ୍ତ୍ରୀ ମୋ ଉପରକୁ ବାସନ କୁସନ ଫୋପାଡ଼ିବାକୁ ଆରମ୍ଭ କଲେ ।

ମୁଁ ଚିତ୍କାର କରି ପଚାରିଲି, "ହଇହେ, ଦିଲ୍ଲୀପକୁମାରକୁ ଯଦି କୌଣସି ସ୍ତ୍ରୀ ଲୋକ ମାରେ, ତେବେ ସେ କଅଣ କରେ କୁହ; ମୁଁ ସେଇପରି କରିବି ।"

ସେ କହିଲେ, "କଅଣ 'ରାମ ଓ ଶ୍ୟାମ' ଫିଲ୍ମରେ ଦିଲ୍ଲୀପ-କୁମାରକୁ ମା' ହାତରୁ ମାଡ଼ ଖାଇବା ଦେଖିନ । ଏବେ ସେମିତି କର ।" ଆଉ ମୁଁ ମାଙ୍କଡ଼ଙ୍କ ପରି କୁଦିବାକୁ ଲାଗିଲି ।

କିଛିଦିନ ପର୍ଯ୍ୟନ୍ତ ମୁଁ ନିୟମିତ ଦିଲ୍ଲୀପକୁମାରର ଅନୁକରଣ କରି ଲାଗିଲି । ଦିନେ ଘରର ଆଗରେ ବସିଥିବା ବେଳେ ମୋ ସ୍ତ୍ରୀ ଅଚାନକ ମୋ ଭଲ ହାତଟାରେ ଜୋରସେ ପଟି ବାନ୍ଧିଲେ । ମୁଁ ପଚାରିଲି, "ମୋ ହାତ କଅଣ ହୋଇଛି ଯେ ପଟି ବାନ୍ଧୁଛ ?"

ସେ କହିଲେ, "ବହୁତ ଦିନ ପରେ ଆଜି ସକାଳ ଶୋ'ରେ ମୁଁ 'ଦିଦାର' ଫିଲ୍ମ ଦେଖି ଆସିଲି । ଏଥିରେ ଦିଲ୍ଲୀପକୁମାର ହାତରେ ଏମିତି ପଟି ବନ୍ଧାହୋଇଛି ।"

ଏହାପରେ କୌଣସି ଫିଲ୍ମରେ ଦିଲ୍ଲୀପକୁମାର ମୁଣ୍ଡରେ ପଟି ବନ୍ଧା ହୋଇଥିଲେ ମୋ ମୁଣ୍ଡରେ ମଧ୍ୟ ବାଧ୍ୟତାମୂଳକ ଭାବରେ ପଟି ଭିଡ଼ିଦିଆଯାଏ । କେଉଁ ଫିଲ୍ମରେ ଦିଲ୍ଲୀପକୁମାର ଛୋଟେଇ ଛୋଟେଇ ଚାଲୁଥିଲେ ମୁଁ ମୋ ପାଦର ମଙ୍ଗଳ ପାଇଁ ପ୍ରାର୍ଥନା କରିବାକୁ ଲାଗିଲି । ଏ ସବୁ ସାଧାରଣ ବ୍ୟାପାର ହୋଇଗଲା । ମୋ ଘର ମୋର ନହୋଇ ଦିଲ୍ଲୀପକୁମାର ଘର ପରି ମନେହେଲା । ମୋ ସବୁ ଫଟୋ ଫ୍ରେମ ଭିତରୁ ବାହାର କରି ଦିଆଗଲା । ଘରର ବିଭିନ୍ନ ଜାଗାରେ ଦିଲ୍ଲୀପକୁମାରର କ୍ୟାଲେଣ୍ଡର ଟଙ୍ଗେଇ ଦିଆଗଲା । କେବେ କେବେ ମତେ ସୁଟ ପିନ୍ଧେଇ

ହଆଯାଉଥିଲା, କେବେ ଧୋତି ପିନ୍ଧେଇ ହଆଯାଉଥିଲା,କେବେ ଡାକ୍ତ ପୋଷାକ, କେବେ ଶ୍ରମିକର ପୋଷାକ ପିନ୍ଧେଇ ହଆହେଲା । ମୁଁ ମୋ ଘରେ ହର୍ଲ୍ଲୀପକୁମାରର 'ଡମି' ମାତ୍ର ହୋଇ ରହିଗଲି ।

କେତେଦିନ ପର୍ଯ୍ୟନ୍ତ ଏଇ କାରବାର ଚାଲିଲା । ଦିନେ ହଠାତ୍ ଖବର ମିଳିଲା ଯେ ଦିଲ୍ଲୀପକୁମାର ସାଇକ୍ରିବାନୁକୁ ବାହା ହୋଇ ଗଲାଣି । ମୁଁ ଖୁବ୍ ଖୁସି ହେଲି ଆଉ ସ୍ତ୍ରୀଙ୍କୁ କହିଲି, "ହଇହେ ଏଥରକ ମତେ ଦାସତ୍ୱରୁ ମୁକ୍ତ ଦିଅ, ଯାହା ଫଳରେ ମୁଁ ବି କୌଣସି ସାଇକ୍ରିବାନୁକୁ ବାହାହୋଇ ପାରିବି ।"

ସେ ବହୁତ ଉଦାସ ହୋଇଗଲେ କିନ୍ତୁ, ତଥାପି ରାଗରେ କହିଲେ, "ମୁଁ ତମକୁ କେବେହେଲେ ସ୍ୱାଧୀନ ହେବାକୁ ଦେବିନାହିଁ । ହର୍ଲ୍ଲୀପ-କୁମାର ମୋଉ ଧୋକ୍କା ଦେଲା ତା'ର ବଦଲା ନେବି । ତେଣୁ ତୁମକୁ ଆଜି ରାଜେଶ ଖାନ୍ନା କରିବା ଆରମ୍ଭ କରିଦେବି ।"

ମୁଁ କହିଲି, "ଏ ସବୁ ମୋ ଦେଇ ହୋଇପାରିବ ନାହିଁ । ମୁଁ ଏତେ ବର୍ଷକାଳ ହର୍ଲ୍ଲୀପକୁମାରର ଅଭିନୟ କରି କରି ଅସଲି ହର୍ଲ୍ଲୀପକୁମାର ହୋଇଯାଇଛି, ବର୍ତ୍ତମାନ ଆଉ ରାଜେଶ ଖାନ୍ନା ହେବା ମୋ ଶକ୍ତିର ବାହାରେ ।"

ଏଥିରେ ସ୍ତ୍ରୀ କହିଲେ, "କିନ୍ତୁ ମୁଁ ହର୍ଲ୍ଲୀପକୁମାରକୁ ଏ ପ୍ରବଞ୍ଚନାର ଠିକ ମଜାଟା ଚଖେଇ ଦେବାକୁ ଚାହୁଁଛି ।"

ମୁଁ କହିଲି, "ତା ହେଲେ ହର୍ଲ୍ଲୀପକୁମାରକୁ ମଜା ଚଖାଅ, ମଝିରେ ମୋତେ କାହିଁକି ପୂରଉଛ ।"

ସେ କହିଲେ, "ମୁଁ କିଛି ଶୁଣିବିନି । ହର୍ଲ୍ଲୀପକୁମାରକୁ ଜଣା-ନାହିଁ ଯେ ନାରୀର ପ୍ରତିଶୋଧ ନିଆଁ କେତେ ଜୋର । ଆଜିଠୁ ମୁଁ ତୁମକୁ ରାଜେଶ ଖାନ୍ନା କରିବି ହିଁ କରିବି । ଦେଖିବି ହର୍ଲ୍ଲୀପକୁମାର କଅଣ କରୁଛି ।"

ଏହିପରି ନାୟିର ପ୍ରତିଶୋଧାଗ୍ନିକୁ ଥଣ୍ଡା କରିବା ପାଇଁ ମୋତେ ରାଜେଶ ଖାନ୍ନା ହେବାକୁ ପଡ଼ିଲା । ମୋର ଲୁଗାପଟା ବଦଳିଗଲା । ମୋ ସବୁ ବଦଳାଇ ଦିଆଗଲା ଆଉ ମୋ ଚୁଲି ବି ବଦଳାଇ ଦିଆଗଲା । କିଛିଦିନ ପାଇଁ ତ ମୁଁ ଠିକ୍ ଢଙ୍ଗରେ ରାଜେଶ ଖାନ୍ନାର କାମ କରିବାକୁ ଲାଗିଲି ।

ଦିନେ ହଠାତ୍ ସ୍ତ୍ରୀ ମୋତେ ପଚାରିଲେ, "ତୁମକୁ କ'ଣ କ୍ୟାନସର ହୋଇପାରିବନି ?"

ମୁଁ ପଚାରିଲି, "ସିଏ କାହିଁକି !"

ସେ କହିଲେ, "'ଆନନ୍ଦ' ଫିଲ୍ମରେ ରାଜେଶ ଖାନ୍ନାକୁ ଯେ କ୍ୟାନସର ହୋଇଛି ।"

ପାଣି ଏଥର ମୋ ମୁଣ୍ଡ ଉପରୁ ଉଠିଯାଇଥିଲା । ଆଉ ସହିବାର ଶକ୍ତି ନଥିଲା । କ୍ରୋଧରେ କହିଲି, "ଆଜିଠୁ ମୁଁ ଆଉ ରାଜେଶ ଖାନ୍ନା ହୋଇ ରହିବି ନାହିଁ । ନାୟକ ହେବାର ଚେଷ୍ଟା ବହୁତ ହୋଇଗଲା । ଆଜିଠୁଁ ମୁଁ ପ୍ରାଣ୍ ହେବି, ଯାହାଦ୍ୱାରା କି ଭିଲେନ୍ ହୋଇ ତୁମକୁ ସିଧାବାଟକୁ ଆଣିପାରିବି ।" ଏଇଆ କହି ଭିଲେନ୍ ଭଳି ହଣ୍ଟରଟାଏ ଉଠେଇ କହିଲି, "ଆଜିଠୁ ମୁଁ ତୁମକୁ ନିରୂପା ରାୟ କରିବି— 'ଧାର୍ମିକ' ଫିଲ୍ମର ନାୟିକା, ସିଏ ସବୁବେଳେ ନିଜ ପତିର ମାନ ରଖେ; ଯେ ନିଜ ପତିଠାରୁ ମାଡ଼ଖାଇ ମଧ୍ୟ ଆଜ୍ଞାବଦ୍ଧ ହୋଇ ରହିଥାଏ । ରୋମାଣ୍ଟିକ୍ ଫିଲ୍ମର ନାୟିକା ମୋର ଦରକାର ନାହିଁ ।"

ସେ ଆଉ କିଛି କହିବାକୁ ଚାହୁଁଥିଲେ କିନ୍ତୁ ମୋ ହାତରେ ହଣ୍ଟର ଦେଖି ଚୁପ୍‌ଚାପ୍ ରୋଷେଇଘରକୁ ଚାଲିଗଲେ । ସେଦିନ ଆଉ ଆଜି ! ମୁଁ ପୁଣି କେବେ ମୋ ସ୍ତ୍ରୀଙ୍କୁ ଫିଲ୍ମ ଦେଖିବାକୁ ଅନୁମତି ଦେଇ-ନାହିଁ; କାରଣ ମୁଁ ସତରେ ପ୍ରାଣ ହୋଇଯାଇଛି ଆଉ ମୋ ସ୍ତ୍ରୀ ନିରୂପା ରାୟ ହୋଇଯାଇଛି । ସତ କହିବାକୁ ଗଲେ ଦିଲ୍ଲୀପକୁମାର ଆଉ ସାଧନା କେବଳ ଫିଲ୍ମରେ ଚରିତ୍ର ହୋଇ ରହିଛନ୍ତି, କିନ୍ତୁ ପ୍ରାଣ ଓ ନିରୂପା ରାୟ ବାସ୍ତବ ଜୀବନର ଅସଲି ଓ ସବୁଦିନିଆଁ ଚରିତ୍ର ।



# ଅତିଥି

( ମେହେମାନ )

ଏହି ଶହ ଶହ ବର୍ଷର ପୁରୁଣା ଦୁନିଆରେ କିଛି ବର୍ଷ ବିତେଇବା ପରେ ମୁଁ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛି ଯେ, ଏହି ଦୁନିଆରେ ଦୁଇଟି ମାତ୍ର ଏମିତିଆ ଜିନିଷ ଅଛନ୍ତି; ଯେଉଁମାନେ ବିନା ଡାକରାରେ ଆସି ପହଞ୍ଚିଯାଆନ୍ତି—ଗୋଟିଏ ହେଉଛି ଅତିଥି, ଅନ୍ୟଟି ମୃତ୍ୟୁ । ମୃତ୍ୟୁ ତ ଯାହାହେଲେ ଅନେକ ସମୟରେ ମଣିଷକୁ ନିଜ ଆଗମନର ସୂଚନା ଦେଇ ୱିଲ୍ ପତ୍ର ଲେଖେଇବାର ସୁବିଧା ଦିଏ, କିନ୍ତୁ ଅତିଥି ଏସବୁ ଝିନ୍‌ଝଟ୍‌ରେ ପଡ଼ିବାକୁ ଚାହେଁନା । ସେ ତ ଦୁମ୍‌ଦୁମ୍ ହୋଇ ଆପଣଙ୍କ ଘରେ ଆସି ପହଞ୍ଚିଯାଏ ଏବଂ ଆପଣ ମିର୍ଜାଗାଲିବଙ୍କ ଦାଇକାର ଆଶ୍ରା ନେଇ କହନ୍ତି—'ଓ ଆୟେଁ ହମାରେ ଘର୍ ଖୁଦାକି କୁଦ୍‌ରତ୍ ହୈ । କଭି ହମ୍ ଉନ୍‌କେ କଭି ଅପ୍‌ନେ ଘରକୋ ଦେଖତେ ହୈଁ ।' (ସେ ମୋ ଘରକୁ ଆସନ୍ତି ଏଇଟା ଭଗବାନଙ୍କ କରୁଣା । କେତେବେଳେ ମୁଁ ତାଙ୍କୁ ଆଉ କେତେବେଳେ ନିଜ ଘରକୁ ଚାହୁଁଥାଏ )

ଯେପର୍ଯ୍ୟନ୍ତ ମୃତ୍ୟୁ ଓ ଅତିଥିଙ୍କ ଆସିବାର ସମ୍ଭାବନା ଥାଏ ମୁଁ ଅତିଥି ତୁଳନାରେ ମୃତ୍ୟୁର ଆଗମନକୁ ପସନ୍ଦ କରେ, ଏଇଥିଲାଗି କି ମୃତ୍ୟୁ ଏକ ଝିଟ୍‌କାରେ ଆପଣଙ୍କର କାମ ଶେଷ କରିଦିଏ, କିନ୍ତୁ ଅତିଥି ଆପଣଙ୍କ ଜୀବନକୁ କଲବଲ କରିବା ପାଇଁ ବହୁ କଷ୍ଟ ସ୍ୱୀକାର କରନ୍ତି ଏବଂ ଟିକିଟିକି କରି ମାରିବାରେ ଲାଗନ୍ତି । କହିବାକୁ ଗଲେ, ଅତିଥି ଦୁଇ ପ୍ରକାରର ଅଛନ୍ତି—ଗୋଟିଏ ବିନା ଡାକରା ଅତିଥି ଆଉ ଦ୍ୱିତୀୟ ହେଉଛନ୍ତି ସେହି ଅତିଥି, ଯାହାଙ୍କୁ ଡକାଯାଏ । କିନ୍ତୁ ସତ ସତ କହିବାକୁ ଗଲେ ପ୍ରତ୍ୟେକ ଅତିଥି ବିନା ଡାକରାବାଲା ଅଟନ୍ତି । ଆପଣ ସ୍ୱୀ

ଭାବନ୍ତୁ ତ, କାହାର ଏତେ ବୁଦ୍ଧି ଭ୍ରଂଶ ହେବ ଯେ ସେ ଘରକୁ ଅତିଥି ନିମନ୍ତ୍ରଣ କରିବ ?

ନିଜ ଘରେ ପାଇପାରୁ ନଥିବା ସୁବିଧା ସୁଯୋଗ ଆପଣଙ୍କ ଘରେ ପାଇବାକୁ ଇଚ୍ଛା କରୁଥିବା ବ୍ୟକ୍ତିମାନେ ହିଁ ଅତିଥି ହୁଅନ୍ତି । ଅନ୍ୟ ପକ୍ଷରେ ଗୃହସ୍ଥ ନିଜେ ପଛକେ ଭୋକଶୋଷରେ ରହୁ, ଅତିଥିର ପେଟ ପୂରେଇବାକୁ ପଡ଼େ ।

ମୁଁ ଆଗରୁ କହୁଛି ଅତିଥି ଆସିବାର କୌଣସି ନିର୍ଦ୍ଧାରିତ ସମୟ ନଥାଏ । ସେ ଦିନ ଓ ରାତିର ଯେକୌଣସି ମୁହୂର୍ତ୍ତରେ ଆପଣଙ୍କ ଘର ଉପରେ ଚଢ଼ଉ କରିପାରନ୍ତି । ସେହି ହେଉଛି ପ୍ରକୃତ ଅତିଥି; ଯେ କି ଯେକୌଣସି ସମୟରେ ଚଢ଼ଉ କରିପାରେ, କାରଣ ଆପଣଙ୍କୁ ଅତିଥି ଆଗମନର ଖବର ଆଗରୁ ମିଳିଗଲେ ଆଶଙ୍କା ଥାଏ କି ଆପଣ ନିଜ ଘରେ ତାଲା ପକେଇଦେଇ ନିଜେ ଅତିଥି ବନି ଅନ୍ୟ କାହା ଘରକୁ ଚାଲିଯାଇ ପାରନ୍ତି । ଏଇଥିପାଇଁ ଅନେକ ସମ୍ମାନୀୟ ଅତିଥି ନିଜ ଆଗମନର କୌଣସି ସୂଚନା ଦିଅନ୍ତି ନାହିଁ । ଆପଣ ପୂରା ସନ୍ତୋଷରେ ନିଜ ଘରେ ବସିଥିବେ ତ ସେତିକିବେଳେ ଅଚାନକ ଆପଣଙ୍କ ଘର ସାମନାରେ ଟ୍ୟାକ୍ସି ହର୍ଣ୍ଣ ବାଜିଉଠେ । ଆପଣ ଝଟ୍‌କିନି ପଦାକୁ ବାହାରି ଆସି ଦେଖନ୍ତି ଯେ ଜଣେ ଅତିଥି ଟ୍ୟାକ୍ସିର ଦ୍ୱାର-ପାଖରେ ଜିନିଷପତ୍ର ଥୋଇ ଠିଆ ହୋଇଛି । ଆପଣ ଅତିଥିଙ୍କୁ ଚିହ୍ନି ଆଗକୁ ବଢ଼ନ୍ତି । ସେ ଆପଣଙ୍କୁ କୁଣ୍ଢେଇ ପକାଏ ଏବଂ ଆବଶ୍ୟକତା ନଥିଲେ ମଧ୍ୟ ଆପଣଙ୍କ ହାଲଚାଲ ପଚାରେ । ଆପଣ ଅତିଥିକୁ ପଚାରନ୍ତି କି ସେ ଆଗରୁ ଆସିବାର ଖବର ଦେଲେନି କାହିଁକି ? ଏଥିରେ ସେ ନକଲି ଲଜ୍ଜିତ ହୋଇ କହେ—"ଆଜ୍ଞା ମୁଁ ଜାଣେଇ ଥାଆନ୍ତି ତ ଆପଣ ମୋ ପାଇଁ ଅଯଥା ଗୁଡ଼ାଏ ଯୋଗାଡ଼ଯନ୍ତ୍ର କରିଥାଆନ୍ତେ । ମୁଁ ଆପଣଙ୍କୁ ଏହି ହଇରାଣରୁ ବଞ୍ଚେଇବାକୁ ଚାହୁଁଥିଲି ।" ଜବାବ୍‌ରେ ଆପଣ ମଧ୍ୟ ହଇରାଣ ହେଉ ନଥିବାର ଛଳନା କରି କହନ୍ତି—"ଆରେ ବାଃ, ଏଥିରେ ଯୋଗାଡ଼ଯନ୍ତ୍ର କରିବାର କ'ଣ ଅଛି ? ଇଏ ତ ଆପଣଙ୍କ ଘର ।" ଆପଣ ପୁଣି ଅତିଥିଙ୍କୁ ଘରକୁ ଆସିବାକୁ କହନ୍ତି । ଏଥିରେ ସେ ବାଧାଦେଇ କହନ୍ତି—"ଆରେ ପହିଲେ ଭାଉଜଙ୍କ ସଙ୍ଗେ ଦେଖାକରି

ନଅନ୍ତୁ ।" ତେବେ ଯାଇ ଆପଣଙ୍କୁ ଜଣାଯାଏ ଯେ ଅତିଥି ଏକୁଟିଆ ନୁହନ୍ତି ବରଂ ତାଙ୍କ ହାତରେ ଏକ ହଜଯ୍ଯୀ ଫଉଜ ଅଛନ୍ତି । ତାପରେ ଜଣେ ମୋଟୀ ଢୋଥମୀ ସ୍ତ୍ରୀଲୋକ ଟ୍ୟାକ୍‌ସି ଭିତରୁ ଓହ୍ଲାନ୍ତି ଆଉ ତାପରେ ଗୋଟିଏ ଗୋଟିଏ ହୋଇ ଭଗବାନଙ୍କ ଅବଦାନ ଟ୍ୟାକ୍‌ସି ଭିତରୁ ପଦାକୁ ବାହାରନ୍ତି । ଆପଣ ଅତିଥିଙ୍କୁ ଘର ଭିତରକୁ ଯିବାକୁ କହନ୍ତି ଆଉ ନିଜେ ସାମାନପତ୍ର ଓହ୍ଲେଇବାରେ ଲାଗିପଡ଼ନ୍ତି । ସାମାନ-ପତ୍ର ଉତାରା ହୋଇଗଲେ, ଟ୍ୟାକ୍‌ସିବାଲା ଆପଣଙ୍କ ଦୟନୀୟ ଅବସ୍ଥା ଅନୁଭବ କରିବା ସତ୍ତ୍ୱେ ଭଡ଼ା ମାଗେ । ଆପଣ ବଡ଼ କଷ୍ଟରେ ଟ୍ୟାକ୍‌ସିର ଭଡ଼ା ଦଅନ୍ତି ଆଉ ଯେତେବେଳେ ଟ୍ୟାକ୍‌ସି ସେଠାରୁ ଯାଇ ଏକ ମାଇଲ ବାଟ ଅତିକ୍ରମ କରେ, ସେତିକିବେଳେ ଅତିଥିଙ୍କର ହଠାତ୍ ମନେପଡ଼େ କି ତାଙ୍କୁ ଟ୍ୟାକ୍‌ସି ଭଡ଼ା ଦେବାକୁ ଅଛି । ସେ କୁହନ୍ତି, "ଭାଇ ଟ୍ୟାକ୍‌ସିବାଲାକୁ ପଇସା ଭଡ଼ା କେତେ ହେଲା ?" ଆପଣ ସାଧାରଣତଃ କହନ୍ତି, "ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ଭଡ଼ା ଦେଇ ଦେଇଛି । ଏଥିରେ ମନେକରିବାର କଅଣ ଅଛି ?"

ତାପରେ ଅତିଥି କୃତ୍ରିମ ରାଗ ପ୍ରକାଶ କରି କହନ୍ତି—"ଆପଣ ଏ କଅଣ କଲେ, ଭଡ଼ା ଦେବାରେ ଆପଣଙ୍କର କି ଦରକାର ଥିଲା ?"

ସେ ଯାହା ହେଉ ଏ ଘଟଣା ପରେ ଯାହାକିଛି ହୁଏ, ତାହା ବଡ଼ ମରଣାନ୍ତକ । ଅତିଥି ତ ପହିଲେ କହନ୍ତି—ତାଙ୍କ ପାଇଁ କିଛି ସ୍ୱତନ୍ତ୍ର ବନ୍ଦୋବସ୍ତ କରାନଯାଉ, କିନ୍ତୁ ତା ସଙ୍ଗେ ସଙ୍ଗେ ନିଜ ସ୍ୱାସ୍ଥ୍ୟର ଅବସ୍ଥା କହି ଡାକ୍ତର ବତେଇଥିବା ପଥ୍ୟଖାଦ୍ୟ ଫରମାସ କରିଦିଅନ୍ତି । ସେ ପଥିର ତାଲିକା ଶୁଣି ଆପଣଙ୍କର ହିହ ଖରାପ ହେବାକୁ ଲାଗେ । ଆପଣ ଏହି ତାଲିକା ଶୁଣିବା ସମୟରେ ହଠାତ୍ ଏକ ଜିନିଷ ପଡ଼ି-ଯିବାର ଶବ୍ଦ ଆସେ । ଆପଣ ଲେଉଟି ପଡ଼ି ଗୁହିଁବାମାତ୍ରେ ଜାଣିପାରନ୍ତି ଯେ ସମ୍ମାନୀୟ ଅତିଥିଙ୍କ ଅଷ୍ଟମ ପୁତ୍ର ନବମ ପୁତ୍ର ସଙ୍ଗେ ଲଢ଼େଇ କରିବା ଫଳରେ ଆପଣଙ୍କ ରେଡ଼ିଓକୁ ଖସେଇ ପକେଇଛି । ଅତିଥି ନିଜ ନବମ ପୁତ୍ରକୁ ମାରିବା ପାଇଁ ଆଗେଇ ଯିବାର ଚେଷ୍ଟା କରନ୍ତି, ସେତେବେଳେ ଆପଣ ଅତ୍ୟାଗ୍ରହିତ ଚେହେରାରେ ତାଙ୍କୁ ବାରଣ କରି କହନ୍ତି, "ଆଜ୍ଞା ଛାଡ଼ନ୍ତୁ, ପିଲାଲୋକ ରେଡିଓ ପକେଇଦିନ ତ କଅଣ ଆଲମାରି

ପଡ଼ିବ ? ଏ ରେଡ଼ିଓକୁ ନିଜର ବୋଲି ମନେକରନ୍ତୁ । ପିଲାମାନଙ୍କୁ ଏମିତି ମାରନ୍ତୁ ନାହିଁ ।" ଅଥଚ ସେତେବେଳେ ଆପଣଙ୍କ ମନ ଗୁହୁଁଥିବ କି ସେ ପିଲାର ରକ୍ତ ପିଇପିବେ । କିନ୍ତୁ ହାୟରେ ଅତିଥି ସତ୍କାରର ଭାବପ୍ରବଣତା ! ଆପଣଙ୍କ କପାଳ ଟିକିଏ କୁଞ୍ଚିତ ବି ହୁଏନାହିଁ ।

ଛାଡ଼ନ୍ତୁ ସେ କଥା । ତାପରେ ଯେତେବେଳେ ଅତିଥି ଆପଣଙ୍କ ଘରେ ପିଲାକବିଲା ସହ ଆସ୍ଥାନ ଜମେଇ ବସନ୍ତି, ଆପଣଙ୍କ ଘର ବରବାଦ ହେବାକୁ ଲାଗେ; ଆପଣଙ୍କର ଆଉ ଆପଣଙ୍କ ସ୍ତ୍ରୀ ଓ ପିଲା-ପିଲାଙ୍କ ଅବସ୍ଥା କେବଳ ଗୁକରଙ୍କ ପରି ହୋଇଯାଏ । ଦିନରାତି ଅତିଥିଙ୍କ ସେବା କରୁଥାଅ ଆଉ ରାତିକୁ ଯାହାତାହା ଖାଇ ପଡ଼ିରୁହ । କେହି ମୁହଁ ବୁଲେଇ ଆପଣଙ୍କୁ ପଗୁରିବ ନାହିଁ କି ଆପଣ କଅଣ ଖିଆ-ପିଆ କଲେ । ଅତିଥି ଆପଣଙ୍କ ପ୍ରତ୍ୟେକ ଜିନିଷକୁ ନିଜ ବ୍ୟବହାରରେ ଲଗେଇବାକୁ ନିଜର ପ୍ରଥମ କର୍ତ୍ତବ୍ୟ ବୋଲି ମନେକରନ୍ତି । ସେ ଆପଣଙ୍କ ଟୁଥ୍‌ପେଷ୍ଟ ବ୍ୟବହାର କରିବେ । ଆପଣଙ୍କ ସେଭିଙ୍ଗ୍ ସେଟରେ ନିଜର ଦାଢ଼ି କମେଇବେ, ଆପଣଙ୍କ ଲୁଗାପଟା ପିନ୍ଧିବେ, ଆପଣଙ୍କ ବିଛଣା ମଧ୍ୟ ବ୍ୟବହାର କରିବେ; ଆଉ ଆପଣ କିଛି କହି ପାରିବେ ନାହିଁ । ଏହାସତ୍ତ୍ୱେ ବି ସେ କେବେ ଫେରିବାକୁ ମନସ୍ଥ କରିଛନ୍ତି, ତାହା ପଗୁରିବାକୁ ଆପଣ ସାହସ କରିପାରିବେନି । ଯଦି କେବେ ଅତିଥି ଭୁଲରେ ନିଜ ଫେରନ୍ତାର କଥା କହିବାକୁ ବସନ୍ତି, ଆପଣଙ୍କୁ ପ୍ରଥା ଅନୁଯାୟୀ ନିଶ୍ଚୟ କହିବାକୁ ହେବ କି, "ଭାଇ ଏତେ ତରତର କଅଁ, ଆପଣ ଆସିବାର ତ ମାତ୍ର ଗୁରିମାସ ହେଲା, ଦ'ଗୁରି ମାସ ଆହୁରି ରହିଯାଆନ୍ତୁ ।" ଅତିଥି ଆପଣଙ୍କ କଥା ମାନିଯିବେ ଆଉ କହିବେ, "ଭାଇ ଆପଣ ବାଧ କରୁଛନ୍ତି ତ ମୋତେ ରହିବାକୁ ପଡ଼ିବ । ଆପଣଙ୍କ କଥାକୁ ଭଲା ମୁଁ କେବେ ଭାଙ୍ଗିପାରିବି ?" ଏବଂ ଏହାପରି ଆପଣ ନିଜେ ନିଜ ଜାଲରେ ଛନ୍ଦି ହୋଇଯିବେ ।

କିନ୍ତୁ ଅତିଥି ଆସିବାରେ ଗୋଟିଏ ଲାଭ ନିଶ୍ଚୟ ଅଛି, ମାନେ ଯେଉଁ ଘରକୁ ବେଶି ଅତିଥି ଆସନ୍ତି, ସେ ଘରକୁ କେବେହେଲେ ଚୋର ଆସେ ନାହିଁ । କାରଣ ଚୋର ଏତିକି ଜାଣେ ଯେ ଯେଉଁ ଘରକୁ ଅତିଥି ଆସିଥାଆନ୍ତି, ସେଠି ଚୋର ପାଇଁ କଣ ଆଉ ବାକିରହେ ! ଯେପରିକି

ଗୋଟିଏ ଖୋଳରେ ଦୁଇଟି ଖଣ୍ଡା ରହିପାରିବନି । ଯଦି କୌଣସି ଘରକୁ ଅତିଥି ଆସିଯାଏ, ତେବେ ତାକୁ ବିଦା କରିବା ପାଇଁ ହଜାର ହଜାର ଉପାୟ କାଢ଼ିବାକୁ ପଡ଼େ । ତା ଆଗରେ ବାରମ୍ବାର ଦିନକୁଦିନ ବଢ଼ୁଥିବା ଦରଦାମର ଚର୍ଚ୍ଚା କରିବାକୁ ପଡ଼େ । ନିଜର ଦୁଃସ୍ଥ ଆର୍ଥିକ ଅବସ୍ଥା ବିଶଦଭାବରେ ବର୍ଣ୍ଣନା କରିବାକୁ ପଡ଼େ । ଉଦାହରଣ ଦେଇ ନିଜ ଉକ୍‌ଣ୍ଠାଗୁଡ଼ିକ ବର୍ଣ୍ଣନା କରିବାକୁ ପଡ଼େ । ଅନେକ ସମୟରେ ଏହା ବି କହିବାକୁ ପଡ଼େ କି ଯେଉଁ ଘରେ ଅତିଥି ରହନ୍ତି ସେଠାରେ ଅଧିଗତି ପରେ ସଇତାନ ବାହାରେ ଏବଂ ଏହା କହିବା ସତ୍ତ୍ୱେ ବି ଯଦି ଅତିଥି ନ ହୁଙ୍କେ, ତେବେ ଆପଣଙ୍କୁ ହିନେ ଏହା ମଧ୍ୟ କହିବାକୁ ପଡ଼େ କି ଆପଣ ନିଜେ ସପରିବାର କୌଣସି ଜରୁରି କାମରେ ଆଉ ଏକ ସହରକୁ ଯାଉଛନ୍ତି । ଯିବା ନିତାନ୍ତ ଦରକାର । ତେଣୁ ଯିବାକୁ ବାଧ୍ୟ । କିନ୍ତୁ ଏପରି କରିବା ମଧ୍ୟ ଅନେକ ସମୟରେ ନିରାପଦ ନୁହେଁ । ନିଜେ ମୁଁ ଥରେ ଏହିଭଳି କଷ୍ଟଦାୟକ ଅବସ୍ଥାରେ ପଡ଼ିଯାଇଥିଲି । ଘଟଣାଟା ଏଇଆ ଯେ, ଯେତେବେଳେ ଜଣେ ଅତିଥି ମୋ ଘରେ ପୂରା ମାସେ ରହିଗଲେ ଆଉ ତାଙ୍କର ଫେରିବାର କୌଣସି ସୁଦୂର ସମ୍ଭାବନା ଦେଖା ନଗଲା, ସେତେବେଳେ ମୁଁ ଅତିଥିଙ୍କୁ କହିଲି—"ଭାଇ ମୋତେ ଗୋଟିଏ ଜରୁରି କାମରେ ବମ୍ବେ ଯିବାର ଅଛି । ଯଦି ଆପଣ ଅନୁମତି ଦିଅନ୍ତି, ତେବେ ମୁଁ ଯାଇ ଫେରି ଆସିବି; ସେ ପର୍ଯ୍ୟନ୍ତ ଆପଣ ଆରାମରେ ଘରେ ରୁହନ୍ତୁ ।" ଏହାର ଉତ୍ତରରେ ସେ କହିଲେ—"ଭାଇ ଆପଣଙ୍କ ଅନୁପସ୍ଥିତିରେ ମୁଁ ଏ ଘରେ ରହି କଅଣ କରିବି ? ଆପଣ ବମ୍ବେ ଯାଉଛନ୍ତି, ତେବେ ଚାଲନ୍ତୁ ମୁଁ ଆପଣଙ୍କ ସଙ୍ଗେ ବମ୍ବେ ଚାଲିଯିବି । ଭ୍ରମଣ ହେବ, ତା ସଙ୍ଗେ ଯାତ୍ରାର ଆନନ୍ଦଟା ବି ମିଳିବ ।"

ଆଉ ଆପଣଙ୍କୁ ଲୁଚେଇବି କଅଣ ? ମୋତେ ଭୁଲ୍ଲାଟାରେ ବମ୍ବେ ଯାତ୍ରା କରିବାକୁ ପଡ଼ିଲା, ଆଉ ନିଜ ଖର୍ଚ୍ଚରେ ଅତିଥିଙ୍କୁ ବି ସାଙ୍ଗରେ ନେବାକୁ ପଡ଼ିଲା ।

ଅତିଥିଙ୍କୁ ବିଦା କରିବା ବଡ଼ କଷ୍ଟକର ବ୍ୟାପାର । ଏବେ ଗୋଟିଏ ମଜା କଥା ମୋର ମନେପଡ଼ୁଛି । ଜଣେ ଭଦ୍ରଲୋକଙ୍କ ଘରକୁ ଜଣେ ଅତିଥି ଆସିବାର ଥିଲା । ସେ ଆସିବା ପୂର୍ବରୁ ସେ

ଭଦ୍ରଲୋକ ନିଜ ସ୍ତ୍ରୀଙ୍କୁ ଅତିଥିଙ୍କ ପ୍ରିୟ ଖାଦ୍ୟର ଏକ ତାଲିକା ଦେଲେ । ସ୍ତ୍ରୀଙ୍କୁ ତାଲିକା ଦେବା ପରେ କହିଲେ, ଏ ତାଲିକା ଦେବାର ଉଦ୍ଦେଶ୍ୟ ଏହା ନୁହେଁ ଯେ ତୁମେ ଏହା ଅତିଥିଙ୍କ ପାଇଁ ରାନ୍ଧିବ ବରଂ ମୋର ଉଦ୍ଦେଶ୍ୟ ହେଲା ଏହା ଯେ, ଯେପର୍ଯ୍ୟନ୍ତ ଅତିଥି ଆମ ଘରେ ରହିଥିବେ ସେପର୍ଯ୍ୟନ୍ତ ଏହି ତାଲିକାରୁ କିଛି ହେଲେ ପରଶିବ ନାହିଁ ଏବଂ ଏ ଭଦ୍ରଲୋକଙ୍କ କହିବା ଅନୁଯାୟୀ ଏହି କୌଶଳ ଫଳରେ ଅତିଥି ଅତି ସହଜରେ ବିଦା ହୋଇଯାଉଥିଲେ ।

ସୁତରାଂ ଯଦି ଆପଣଙ୍କ ଘରେ କୌଣସି ଅତିଥି ଆସିଯାଆନ୍ତି, ତେବେ ଆପଣ ନିଶ୍ଚିତ ଭାବରେ ଖୋଜ୍ ନେବେ ତାଙ୍କର ପ୍ରିୟ ଖାଦ୍ୟ କ'ଣ କ'ଣ । ଥରେ ଆପଣଙ୍କୁ ଅତିଥିଙ୍କର ପ୍ରିୟ ଖାଦ୍ୟ ଜଣା-ପଡ଼ିଗଲେ, ତାଙ୍କୁ ଫେରନ୍ତା ଟିକଟ କଟେଇ ଦେବାଲାଗି ଆପଣଙ୍କୁ ଖୁବ୍ ସୁବିଧା ହୋଇଯିବ । ଅତିଥି ଫେରିଯିବାବେଳେ କେବେହେଲେ ତାଙ୍କୁ ପଚାରିବ ନାହିଁ ଯେ ସେ ପୁଣି କେବେ ଆସିବେ ! ବରଂ ତାଙ୍କୁ ସାଫ୍ ସାଫ୍ କହିଦେବେ ଯେ ସମ୍ଭବତଃ ଏହା ତାଙ୍କର ଶେଷ ସାକ୍ଷାତ । ଆପଣଙ୍କ କଥାରେ ଅଧିକ ଜୋର୍ ଦେବା ଲାଗି କୌଣସି ଜ୍ୟୋତିଷୀର ଗଣନା କହିଦେବେ ଯେ ଆପଣ ଏ ଦୁନିଆରେ ମାତ୍ର ଆଉ କେତୋଟି ଦିନର ଅତିଥି । ଏହା ସ୍ପଷ୍ଟ ଯେ ଏହାପରେ କୌଣସି ଅତିଥିଙ୍କୁ ନିଜ ଘରକୁ ଡକେଇବାର କୌଣସି ପ୍ରଶ୍ନ ଉଠିବ ନାହିଁ ।



# ଘର ଟେଲିଫୋନ୍

( ଘର୍‌କା ଟେଲିଫୋନ୍ )

କି କୁକ୍ଷଣରେ ଯେ ମୁଁ ଘରେ ଟେଲିଫୋନ୍ ଲଗାଇବାକୁ ସ୍ଥିର କଲି, ତାହା କିଏ ଜାଣେ । ଏ ସମସ୍ୟାଟା ଏତେ ଖରାପ ଥିଲା ଯେ ଏହାର ଭିତ୍ତି ଉପରେ ମୁଁ ମୋ ଜୀବନକୁ ଦୁଇଭାଗରେ ବିଭକ୍ତ କରିଦେଇଛି । ଟେଲିଫୋନ ମୋ ଘରେ ଖଞ୍ଜା ହେବା ପୂର୍ବରୁ ଯେଉଁ ସମୟ ବିତିଯାଇଛି, ତାହା ଗୋଟିଏ ଭାଗ ଆଉ ତାପରେ ଯେଉଁ ସମୟ ଆରମ୍ଭ ହେଲା, ସେ ହେଉଛି ଅନ୍ୟ ଭାଗ । ମୋ ଦିନଗୁଡ଼ିକ ବେଶ୍ ଆନନ୍ଦରେ କଟି ଯାଉଥିଲା ! ଦିନେ ମୋ ସ୍ତ୍ରୀ ମୋର କୌଣସି ଏକ ଦୁର୍ବଳତାର ସୁଯୋଗ ନେଇ ଫର୍ମାସ କରିଦେଲେ କି ଘରେ ଟେଲିଫୋନ ଖଞ୍ଜାଯାଉ । ମୁଁ ପଚାରିଲି, "ସେଇଟା କେଉଁଥିପାଇଁ ?" ସେ କହିଲେ, "ସାରାଦିନ ମୁଁ ବୋର୍ ହୋଇଯାଉଛି । ଟେଲିଫୋନ ଆସିଗଲେ ମୁଁ ବେଳେବେଳେ ବାପଘରସହ କଥାବାର୍ତ୍ତା ହୋଇ-ପାରନ୍ତି ।"

ମୁଁ ମନେ ମନେ ଭାବିଲି ଯଦି ଶଶୁର ଘରର ଲୋକେ କେବଳ ଟେଲିଫୋନ୍ ଯୋଗେ କାମ ଚଳେଇ ନେବେ, ଏହାଠାରୁ ଭଲକଥା ଆଉ କଅଣ ହୋଇପାରେ ! ଶଶୁର ଘର ଲୋକେ କଥା କଥାକେ ଝିଅ ହାଲ ବୁଝିବାଲାଗି ଯେ ଚାଲିଆସନ୍ତି ଓ ଖିଆପିଆ ନକରି ଯାଆନ୍ତି ନାହିଁ, ସେମାନଙ୍କ ପାଖକୁ ଟେଲିଫୋନ୍ ଯୋଗେ ଝିଅର ଅବସ୍ଥା ଜଣେଇ ଦେଇ ନିଜର ଅବସ୍ଥାକୁ ନିରାପଦ ରଖାଯାଇପାରେ । ଏଇଟା ପରିଷ୍କାର ଥିଲା ଯେ ମୁଁ ସୁଦୂର ପରିଣତି ବିଷୟ ଭାବି ଏହା କରିଥିଲି । କିନ୍ତୁ କିଏ ଜାଣିଥିଲା ଯେ ଏହି ଟେଲିଫୋନ୍ ମୋ ଶଶୁର ଘରକୁ

ପ୍ରତି ମିନଟରେ ମୋ ବିରୁଦ୍ଧରେ ଅଭିଯୋଗମାନ ପଠାଇବାରେ ଏକ ମାଧ୍ୟମ ରୂପେ ବ୍ୟବହୃତ ହେବ, ଆଉ ମୁଁ କେବଳ ତା'ର ଦର୍ଶକ ହୋଇ ରହିଥିବି । ସୁତରାଂ ଏବେ ଏହି ଟେଲିଫୋନ୍ ମୋର ଶ୍ରେଷ୍ଠ ବନ୍ଧୁ ପ୍ରତ୍ୟେକ କାମକୁ ଶଶୁର ଘରେ ପଠାଇ ଦେଉଛି । ମୁଁ ଯେବେ ସ୍ତ୍ରୀଙ୍କୁ ଉଚ୍ଚ ସ୍ୱରରେ କହିଲି—"ଶ୍ରୀମତୀଜୀ ! ଆପଣଙ୍କ ବାପ ଭୁଲ୍‌ଟାରେ ମୋତେ ଠକିଦେଲେ । ସେ ଏପରି ବାଜେ ଯୌତୁକଗୁଡ଼ିଏ ଦେଇଛନ୍ତି ଯେ, ସେଗୁଡ଼ିକ ବ୍ୟବହାର କରିବାକୁ ମୋତେ ଲାଜ ଲାଗୁଛି ।" ମୋ କଥାଟା ପୂରା ହୋଇଛି କି ନାହିଁ, ସ୍ତ୍ରୀ ସଙ୍ଗେ ସଙ୍ଗେ ନିଜ ବାପଘର ସହିତ ଟେଲିଫୋନ ସଂଯୋଗ କରିଦେଲେ । ମୋ ଶଶୁରଙ୍କୁ ଡାକି କହି ଲାଗିଲେ—"ଆପଣଙ୍କ ଜ୍ୱାଇଁଙ୍କର ଏହି ଅଭିଯୋଗ ଯେ ଆପଣ ଯୌତୁକରୂପେ ତାଙ୍କୁ ସବୁ ଖରାପ ଜିନିଷ ଦେଇଛନ୍ତି । ନିଅନ୍ତୁ, ତାଙ୍କ ସାଙ୍ଗରେ କଥାବାର୍ତ୍ତା କରନ୍ତୁ ।"

ମୁଁ ସ୍ତ୍ରୀଙ୍କୁ ବାରମ୍ବାର ମନାକରିବା ସତ୍ତ୍ୱେ ସେ ରିସିଭର୍‌ଟି ଆଣି ମୋ ହାତରେ ଧରେଇ ଦେଲେ । ଏବେ ମୁଁ କରେ କ'ଣ ? କେବଳ ଏତିକି କହି ରହିଗଲି, "ହାଲୋ ! ସର, ରଙ୍ଗ୍ ନମ୍ବର ।" ତାର ଜବାବ୍‌ରେ ଆରପଟୁ ଶଶୁରଙ୍କର ଖୁବ କଡ଼ା ଶବ୍ଦ ଶୁଣାଗଲା, "ବାବୁ ! ନମ୍ବର ତ ରଙ୍ଗ୍ ନୁହେଁ, ତମେ ନିଜେ ବହୁତ ରଙ୍ଗ୍ ଲୋକ ଅଟ । ମୁଁ ମୋ ଝିଅକୁ ଗୋଟିଏ ରଙ୍ଗ୍ ଲୋକକୁ ଦେଇ ଦେଇଛି— ବାପ୍ ଏହା ହିଁ ମୋର ଦୋଷ ।" ଆପଣ ବିଶ୍ୱାସ କରନ୍ତୁ ମୁଁ ଏ ଘଟଣା ପରେ ଆଉ କେବେ ଶଶୁର ଘର ବିରୁଦ୍ଧରେ କିଛି କହିବାକୁ ସାହସ କରିନି । ବରଂ ମୁଁ ସତକୁ ସତ ନିଜକୁ ରଙ୍ଗ୍ ଲୋକ ବୋଲି ଭାବିବାକୁ ଲାଗିଲି । ଯଦି ରଙ୍ଗ୍ ଲୋକ ନହୋଇଥାନ୍ତି, ତେବେ ଘରେ ଟେଲିଫୋନ୍ ଲଗାଇ ଏ ବିପଦ ବରଣ କରିଥା'ନ୍ତି କାହିଁକି ? ମୁଁ ଭାବିଥିଲି ଯେ ଟେଲିଫୋନ୍‌ଟା ଘରକୁ ଆସିଗଲେ ଅନ୍ତତଃ ଶଶୁର ଘର ଲୋକବାକଙ୍କ ଯିବାଆସିବାଟା କମିଯିବ । କିନ୍ତୁ ଠିକ୍ ତାର ଓଲଟା, ଏ ଯିବାଆସିବାଟା ବେଶି ହୋଇଗଲା । ଟେଲିଫୋନ୍ କରାଯାଉଛି— "ଆଜି ଘରେ ବଢ଼ିଆ ମିଠା ତିଆରି ହୋଇଛି । ଆପଣମାନେ ଆସି ଟିକିଏ ଚାଖିନେଲେ ଭଲ ହୁଅନ୍ତା ।" ଟେଲିଫୋନ୍ ରିସିଭର୍‌ଟା ଥୁଆ-ହେଉ ନହେଉଣୁ ଘର ଆଗରେ ରିକ୍‌ସାର ଲାଇନ୍ ଲାଗିଯାଉଛି ଏବଂ

ମୁଁ ଆତିଥ୍ୟ ଦେଖାଇବାରେ ଲାଗିଯାଉଛି । ହାୟ ! ସେସବୁ ଦିନଗୁଡ଼ିକ କେଡ଼େ ସୁନ୍ଦର ଥିଲା; ଯେତେବେଳେ କି ମୋ ଘରେ ଟେଲିଫୋନ୍ ନଥିଲା । କେତେ ବଢ଼ିଆ ବଢ଼ିଆ ମିଠେଇ ମୁଁ ସେତେବେଳେ ଖାଉଥିଲି ! କିନ୍ତୁ କେହି ଜାଣିପାରୁ ନଥିଲେ ଯେ ମୁଁ କଅଣ ଖାଉଛି ଓ କଅଣ ପିଉଛି ।"

ଏବେ ତ କିନ୍ତୁ ଘରର ଠିକ ଠିକ କଥା ବି ପଦାରେ ପଡ଼ି-ଯାଉଛି । ପୁଣି ମୋ ଘରବାଲି ମୋ ଲାଗି ଟେଲିଫୋନ୍‌କୁ ଏକ ଚୌକିଦାର କରିଦେଇଛି । ଦପ୍ତରରେ ବସି କାମ କରୁଛି, ଅଚାନକ ଟେଲିଫୋନ୍ ଘଣ୍ଟି ବାଜେ । ସେଆଡ଼ୁ ଆବାଜ୍ ଆସେ—"ଆପଣ ଦପ୍ତରରେ ଉପସ୍ଥିତ ଅଛନ୍ତି ତ ?"

ମୁଁ କହେ—"ଉପସ୍ଥିତ ଅଛି । ସେଇଥିଲାଗି ତ କଥା କହୁଛି ।"

ସେ କହୁଛନ୍ତି—"ସନ୍ଧ୍ୟାରେ ଘରକୁ ଆସିଲାବେଳେ କେକ୍‌ପେଷ୍ଟ୍ରି ନେଇ ଆସିବେ ।"

ମୁଁ ପଚାରୁଛି—"କିନ୍ତୁ ଏଥିଲାଗି ଟେଲିଫୋନ୍ କରିବାର କି ଦରକାର ଥିଲା ? ସକାଳେ ଘରୁ ବାହାରିଲାବେଳେ କହିଦେଇ ଥା'ନ୍ତ ।"

ଆବାଜ୍ ଆସୁଛି—"ଟେଲିଫୋନ ଆସିବା ଦିନଠାରୁ କୌଣସି କଥା ମନେରହୁନାହିଁ । ଆପଣଙ୍କୁ ଫୋନ୍‌ରେ ବି ତ ଜଣାଇ ଦିଆଯାଇ ପାରେ ।"

ଆଉ ଆପଣ ବିଶ୍ୱାସ କରନ୍ତୁ, ସନ୍ଧ୍ୟାରେ ଘରକୁ ଫେରିଲା-ବେଳେ ମୁଁ କେବେହେଲେ କେକ୍‌ପେଷ୍ଟ୍ରି ନେଇ ଯାଏନାହିଁ । କାରଣ ମୁଁ ଜାଣେ ଯେ କେକ୍‌ପେଷ୍ଟ୍ରିର ଫରମାସ୍, ଟେଲିଫୋନ୍ କରିବାର ଗୋଟାଏ ବାହାନା । ଫୋନ୍ କରିବାର ଅସଲ ମତଲବ ହେଉଛି, ମୋ କାମଧନ୍ଦା ଉପରେ ନଜର ରଖିବା । ଯଦି କୌଣସି ଦିନ ଅକସ୍ମାତ୍ ମୁଁ ଦପ୍ତରରେ ନଥାଏ; ତେବେ ବିଶ୍ୱାସ କରନ୍ତୁ ମୁଁ ଘରେ

ପଡ଼ୋଶୀମାନେ ମୋତେ ଶତାଧିକ ପ୍ରଶ୍ନ ପଚାରିଥିବ—"କେଉଁଠାକୁ ଯାଇଥିଲ ? କାହିଁକି ଯାଇଥିଲ ? କାହା ସାଙ୍ଗରେ ଯାଇଥିଲ ? ଯାହା ସାଙ୍ଗରେ ଯାଇଥିଲ, ତା'ର ଲିଙ୍ଗ କଅଣ ? ଇତ୍ୟାଦି ଇତ୍ୟାଦି ।"

ଏହା ସତ୍ତ୍ୱେ ବି ମୁଁ ଏହି ଚୌକିଦାରିକୁ ବରଦାସ୍ତ କରିନେଉଛି, କିନ୍ତୁ ମୋର ଏହି ଅଭିଯୋଗ ଯେ, ଯେବେଠୁଁ ଟେଲିଫୋନ୍ ଆମ ଘରକୁ ଆସିଲାଣି; ସେହିଦିନଠାରୁ ଆମଘର 'ଆମଘର' ହୋଇ ରହିନାହିଁ, ବରଂ ପରଘର ହୋଇ ରହିଲାଣି । ଆଉ ମଧ୍ୟ ଏହା ଯେ କେବଳ ଟେଲିଫୋନ୍ ଅପରେଟର୍ ବନି ରହିଯାଇଛି । ଯଦି ଅଧରାତିରେ ଘର କବାଟରେ ଠୁକ୍ ଠୁକ୍ ଆବାଜ୍ ହୁଏ, ମୁଁ ଜାଣିଯାଏ ଯେ ନିଶ୍ଚୟ କାହାର ମାମୁଁ-ଭଣଜାର-ଅଜାଙ୍କ ଦେହ ଅଚାନକ ଖରାପ ହୋଇଛି । ଆଉ ଏ 'ଦେହ ଖରାପ'ଟା ସେପର୍ଯ୍ୟନ୍ତ ଭଲ ହେବନି; ଯେପର୍ଯ୍ୟନ୍ତ ଡାକ୍ତର ସଙ୍ଗେ ଆମ ଟେଲିଫୋନର ସଂଯୋଗ ନହେବ । ମୁଁ ନିଦରୁ ଉଠି ବାହାରକୁ ଗଲେ, ବଡ଼ ବିନମ୍ରତାର ସହ ସେ କହନ୍ତି -- "ମୋ ମାମୁଁର ଭଣଜାର-ଅଜାଙ୍କ ଦିହ ଅଚାନକ ଖରାପ ହୋଇଯାଇଛି । ଯଦି ଆପଣ ଫୋନ୍ କରିବାକୁ ଅନୁମତି ଦେବେ, ତେବେ ମୁଁ ବଡ଼ କୃତଜ୍ଞ ହେବି । ମୁଁ ରାଗିଯାଇ କହେ ରାତିଅଧଟାରେ ଆପଣ କଅଣ ଫୋନ୍ ଜରିଆରେ ଯମ ସଙ୍ଗେ ସମ୍ପୃକ୍ତ ହେବାକୁ ଚାହୁଁଛନ୍ତି ?

ସେ କହନ୍ତି—"ଆଜ୍ଞା ନା, ଡାକ୍ତରଙ୍କୁ ଡାକିବାର ଅଛି ।"

ଆଉ ମୁଁ ଦାନ୍ତ କଡ଼ମଡ଼ କରି କୁହେ—"ଯମର ଅର୍ଥ ହିଁ ଡାକ୍ତର ।"

ସେ ଭଦ୍ରବ୍ୟକ୍ତି ତେଣେ ଫୋନ୍ କରିବାରେ ବ୍ୟସ୍ତଥାନ୍ତି, ଆଉ ମୁଁ ନିଦରେ ଟଳି ଟଳି ଏହି ଅପେକ୍ଷାରେ ଥାଏ ଯେ, କେତେବେଳେ ତାଙ୍କ ଫୋନ୍ ସରିବ ଆଉ ମୁଁ ଶୋଇବି । ବହୁତ ଡେରିଯାଏ ଫୋନ୍ କରଯାଏ । ଆଉ ଯେତେବେଳେ ଫୋନ୍ ସରିଯାଏ, ସେତେବେଳେ ସେ ଭଦ୍ରବ୍ୟକ୍ତି ନିଜ ମାମୁଁର-ଭଣଜାର-ଅଜାଙ୍କ ଦେହ ଅସୁଖ ବିଷୟରେ ଏତେ ବିବ୍ରତ ଥାଆନ୍ତି ଯେ, ସେ କଲ୍‌ର ପଇସା ନଦେଇ ଘରକୁ ଚାଲିଯାଆନ୍ତି । ମୁଁ ମଧ୍ୟ ଏଇଭଳି ଲୋକମାନଙ୍କ ସଙ୍ଗେ ଭଲ

ବ୍ୟବହାର କରେନାହିଁ । ଏହିପରି ଜଣେ ଭଦ୍ରବ୍ୟକ୍ତି, ଏହିପରି ଅଧରାତ୍ରରେ କାହାର ଦେହ ଖରାପ ବିଷୟ ଫୋନ୍ କରି କଲ୍‌ର ପଇସା ନଦେଇ ଚାଲିଗଲେ । ସେତେବେଳେ ତ ମୁଁ ଚୁପ୍ ରହିଲି, କିନ୍ତୁ ପରଦିନ ଠିକ୍ ରାତି ଗୋଟାକବେଳେ ତାଙ୍କ ଘରେ ପହଞ୍ଚି କବାଟ ଝିଙ୍କି ଧଡ଼ କରିବା ଆରମ୍ଭ କରିଦେଲି । ସେ ଭଦ୍ରବ୍ୟକ୍ତି ବିବ୍ରତ ହୋଇ ପଦାକୁ ଆସିଲେ । ମୋତେ ଦେଖି ପଚାରିଲେ, "କଥା କଅଣ ?" ମୁଁ କହିଲି, "କାଲି ରାତିରେ ଆପଣ ଫୋନ୍ କଲ କରି ପଇସା ଦେଇ-ନାହାନ୍ତି, ତାହା ଦେଇଦେଲେ ଭଲ ହୁଅନ୍ତା ।"

ଏଥିରେ ସେ ରାଗିଯାଇ କହିଲେ—"କଲ୍‌ର ପଇସା ମାଗିବା ପାଇଁ ଏଇଟା କଅଣ ପ୍ରକୃଷ୍ଟ ସମୟ ?"

ଆଉ ମୁଁ ପଚାରିଲି, "ଆଉ କାଲି ଅଧରାତ୍ରରେ ଆମଘରୁ ଆପଣ ଯେଉଁ ଫୋନ୍ କଲେ, ସେଇଟା କଅଣ ଫୋନ୍ କରିବା ସମୟ ଥିଲା ?" ଏହା ଶୁଣି ସେ ମୋ ଆଡ଼କୁ ଗୋଟାଏ ଚାହାଣି ଏପରି ଭାବରେ ଫିଙ୍ଗି-ଦେଲେ ଯେ, ସେ ଯେମିତି ମୋତେ ଭିକ୍ଷା ଦେଉଛନ୍ତି । ଏ ଘଟଣା ପରେ ସେହି ଭଦ୍ରଲୋକଙ୍କ ଘରେ କାହାରି ଦେହ ଅଧରାତ୍ରରେ ଖରାପ ହୋଇନାହିଁ ।

ଭଗବାନ ମିଛ ନ କୁହାନ୍ତୁ, ମୋ ଘର ଗୋଟିଏ ବଢ଼ିଆ ପବ୍ଲିକ ଟେଲିଫୋନ୍ ବୁଥ୍‌ରେ ପରିଣତ ହୋଇଗଲାଣି । ଏତିକି କେବଳ ତଫାତ୍ ଯେ ପବ୍ଲିକ୍ ବୁଥ୍‌ରେ ଆପଣଙ୍କୁ ପଇସା ଦେବାକୁ ପଡ଼େ, କିନ୍ତୁ ମୋ ଘରେ ଆପଣଙ୍କୁ କଲ୍‌ର ପଇସା ଦେବାର କଷ୍ଟ ସ୍ୱୀକାର କରିବାକୁ ପଡ଼େନାହିଁ । ଏମିତି ବି କେତେକ ପଡ଼ୋଶୀ ଅଛନ୍ତି; ଯେଉଁମାନେ କି ମୋ ଘରୁ ମାଗଣାରେ ଟେଲିଫୋନ୍ କରିବାକୁ ଏକ ପୁଣ୍ୟ କାର୍ଯ୍ୟ ବୋଲି ମନେକରନ୍ତି । ଏହି ଭଦ୍ରବ୍ୟକ୍ତିମାନେ ପ୍ରଥମତଃ ଫୋନ୍ କରନ୍ତି, ତାପରେ କୁଶଳ ଜିଜ୍ଞାସା କରନ୍ତି ଏବଂ ଏତେ ସମୟ ଯାଏ କରନ୍ତି ଯେ, ମୋତେ ସେମାନଙ୍କୁ ଚାହା ଦେବାକୁ ପଡ଼େ; ତତ୍-ସଙ୍ଗେ ପାନରେ ସତ୍କାର କରିବାକୁ ପଡ଼େ । ଏସବୁ କରିବା ହେତୁ ଏତେ ସମୟ ବିତିଯାଏ ଯେ, ସେମାନଙ୍କ ସ୍ମରଣଶକ୍ତି କମିଯାଏ । ଏଇଟା

ଜଣାଶୁଣା କଥା ଯେ କାଳ ବିତିଗଲେ, ମଣିଷର ବହୁତ କଥା ମନେ ରହେନାହିଁ । ଏହାପରି ମୋ ଫୋନ୍ କଲର ପଇସା ବି କ୍ଷୀଣ ସ୍ମୃତିଶକ୍ତିର ବେଢ଼ା ଉପରେ ବଳିପଡ଼େ । ଏପରି ଅନେକ ଭଦ୍ରବ୍ୟକ୍ତି ବି ଅଛନ୍ତି, ଯେଉଁମାନେ ବି କଲ୍‌ର ପଇସା ସଙ୍ଗେ ସଙ୍ଗେ ଦେଇଦବାକୁ ଚାହାନ୍ତି କିନ୍ତୁ ଏଥିପାଇଁ ସେ ପକେଟରୁ ଦଶଟଙ୍କିଆ ନୋଟ୍‌ଟିଏ କାଢ଼ନ୍ତି, ଆଉ ପଚାରନ୍ତି—"ଆପଣଙ୍କ ପାଖରେ ରେଜା ନିଶ୍ଚୟ ଥିବ ?" ଆପଣ କୁହନ୍ତୁ ତ, ମୁଁ କଅଣ ଜଣେ ପାନବାଲା ଯେ ଦଶଟଙ୍କାର ରେଜା ରଖିଥିବି । ଫଳ ଏଇଆ ହୁଏ ଯେ, ଦଶଟଙ୍କିଆ ନୋଟ୍‌ଟି ପୁଣି ତାଙ୍କ ପକେଟକୁ ଫେରିଯାଏ; ଆଉ ମୁଁ ତାଙ୍କ ମୁହଁକୁ ଚାହିଁ ରହିଯାଏ ।

ଏମିତିଆ ଏକ ସାହାବଙ୍କ କଥା ଶୁଣନ୍ତୁ । ସେ ନିତି ସକାଳୁ ମୋ ଘରେ ପହଞ୍ଚି ଫୋନ୍ କରନ୍ତି । ଏହି ବ୍ୟାପାର କେତେମାସଯାଏ ଚାଲିଲା । ଦିନେ ସେ ଫୋନ୍ କରିବା ପରେ ପୂର୍ବପରି ନିଜ ପକେଟରୁ ଦଶଟଙ୍କିଆ ନୋଟ୍‌ଟିଏ କାଢ଼ିବାରୁ, ସେ ନୋଟଟି ହାତରେ ଧରି କହିଲି—'ମହାଶୟ ଆପଣ ଯେତେଥର ଫୋନ୍ କଲେଣି, ତାର ଦାମ୍ ଦଶଟଙ୍କାରୁ ବେଶି ହୋଇଗଲାଣି, ଆଉ ରେଜା କଅଣ, ନୋଟ କଅଣ ।" ଏହା କହି ସେ ନୋଟଟିକୁ ପକେଟରେ ରଖିଦେଲି । ଏ ଘଟଣା ପରେ ସେ ଆଉ କେବେ ମୋ ଘରକୁ ଫୋନ୍ କରିବାକୁ ଆସିଲେ ନାହିଁ, କିନ୍ତୁ ମୁଁ ଶୁଣୁଛି, ସେ ଏବେ ଆଉ ଗୋଟିଏ ଜାଗାକୁ ନୂଆ ଦଶଟଙ୍କିଆ ନୋଟ୍‌ଟିଏ ନେଇ ଫୋନ୍ କରିବାକୁ ଯାଉଛନ୍ତି ।

ଅନ୍ୟମାନେ ମୋ ଘରେ ଫୋନ୍ କରିବାର ମୁଁ ବିରୋଧ କରେନାହିଁ । ମୁଁ କେବଳ ଏତିକି ଚାହେଁ ଯେ ଅନ୍ୟ କାହାଘରୁ ଫୋନ୍ କଲାବେଳେ ଟିକିଏ ଭଦ୍ରତା ଅବଲମ୍ବନ କରିବା ଉଚିତ । ଦିନେ ଜଣେ ଭଦ୍ରବ୍ୟକ୍ତି ମୋ ଘରକୁ ଫୋନ୍ କରିବାକୁ ଆସିଲେ । ଫୋନ୍ ମିଳିବା ମାତ୍ରେ ସେ ଏତେ ଜୋର୍‌ରେ 'ହାଲୋ' ବୋଲି ଚିଲେଇ ଉଠିଲେ ଯେ ମୋ ଝିଅ ଚମକି ନିଦରୁ ଉଠିପଡ଼ିଲା । ତା'ପରେ ସେ ଏତେ ଜୋର୍‌ରେ ଚିଲେଇ ଲାଗିଲେ ଯେ ମୋ କାନପରଦା ଫାଟିଗଲା । ମୁଁ ତାଙ୍କ ହାତରୁ ରିସିଭର୍‌ଟା ନେଇଯାଇ କହିଲି—"ମହାଶୟ ଆପଣ ଫୋନ୍ ଜରିଆରେ କଥାବାର୍ତ୍ତା

କରିବାର କଷ୍ଟ କାହିଁକି କରୁଛନ୍ତି ? ମୋ ଘାଙ୍ଗରେ କୋଠାର ଛାତ ଉପରକୁ ଆସନ୍ତୁ । ସେଠାରେ ଆପଣ ଏତିକି ପାଟିରେ କଥାବାର୍ତ୍ତା କଲେ, ତାହା ସେହି ବ୍ୟକ୍ତିଙ୍କ ପାଖରେ ଗୁଏଁ ଗୁଏଁ ଯାଇ ପହଞ୍ଚିଯିବ । ଆପଣଙ୍କ ପାଟି ଯଦି ଏତେ ବଡ଼ ଅଛି, ତେବେ ଫୋନ୍ କରି ସାରି ବନ୍ଧିଟାକୁ ଉଠାଉଛନ୍ତି କାହିଁକି ? ଏ ବାଟେ ଭୁଛାଟାରେ ପଇସା ନଷ୍ଟ ହେବ ସିନା !"

ଏମିତି କେତେ ନୂଆ ନୂଆ ପ୍ରକାରର ଫୋନ୍ କଲ୍‌ବାଲା ମୋ ହାବୁଡ଼େ ପଡ଼ନ୍ତି । ଦିନେ ଦୁଇଜଣ ନିଜ ନିଜ ଭିତରେ ଝଗଡ଼ା କରି ମୋ ବୈଠକଖାନାରେ ଆସି ପହଞ୍ଚିଲେ । ଜଣେ ଅନ୍ୟକୁ ଗାଳି ଦେଉଥାଏ । ତାଙ୍କ ଭିତରୁ ଜଣେ ମୋତେ ପଚାରିଲା—"ଆପଣଙ୍କ ଫୋନ୍ ମୁଁ ଟିକିଏ ବ୍ୟବହାର କରିପାରେ କି ?" ମୁଁ କହିଲି—"ଖୁବ୍ ଆନନ୍ଦରେ କରିପାରନ୍ତି ।"

ମୋର ଅନୁମତି ପାଇବା ସଙ୍ଗେ ସଙ୍ଗେ ସେ ରିସିଭର୍‌ଟି ଉଠେଇ ଅନ୍ୟ ଲୋକର ମୁଣ୍ଡରେ ପିଟିଦେଲା । ଏତିକି କରି ସେ ରିସିଭର୍‌ଟା ଥୋଇଦେଲା ଓ କଲ୍ ପଇସାଟା ମୋ ହାତରେ ଦେଇ-ଦେଲା । ଟେଲିଫୋନ୍‌ର ଏପରି ଅଦ୍ଭୁତ ବ୍ୟବହାର ମୁଁ ଆଜିଯାଏ ଦେଖିନଥିଲି । ଆଉ ଏଇଟା ବି ପ୍ରଥମ ଥିଲା, ଯେଉଁଥିରେ କି ମୁଁ ବିନା କଲ୍‌ରେ ପଇସାଟି ପାଇଯାଇଥିଲି । ମୋ ଫୋନ୍‌ରୁ ଅନ୍ୟ ଲୋକଙ୍କ କହିବା କଥା ଶୁଣୁଡ଼ିଦିଅନ୍ତୁ । ଅନେକ ସମୟରେ ଏପରି ବହୁ ଗଣ୍ଡଗୋଳିଆ ଟୋକାଙ୍କୁ ମୁଁ ଭେଟେ, ଯେଉଁମାନେ କି ମୋତେ ଅଧରାତିରେ ଉଠେଇ ହଇରାଣ କରନ୍ତି ।

ଦିନେ ରାତି ରଟାବେଳେ ମୋ ଫୋନ୍‌ର ଘଣ୍ଟି ବାଜିବାକୁ ଲାଗିଲା । ମୁଁ ରିସିଭର୍ ଉଠାଇବାରୁ ସେପଟୁ ଆବାଜ ଆସିଲା— "ହାଲୋ ! ଆପଣ ଏତେବେଳଯାଏ ଚେଇଁ ରହିଛନ୍ତି ?"

ମୁଁ କହିଲି, "ଆଜ୍ଞା ନା, ମୁଁ ତ ଶୋଇଥିଲି, ଆପଣଙ୍କ ଫୋନ୍ ମୋତେ ଉଠେଇଦେଲା । କିନ୍ତୁ ଆପଣ କିଏ କହୁଛନ୍ତି ?"

ସେପଟରୁ ଆବାଜ ଆସିଲା—"ଭାଇ ସାହାବ ! ମୁଁ ଜଣେ ଚୋର । ଆପଣଙ୍କ ଘରେ ଚୋରି କରିବାକୁ ଚାହୁଁଥିଲି, କିନ୍ତୁ ଆପଣଙ୍କ ଘରକୁ ଯିବା ପୂର୍ବରୁ ଜାଣିବା ଉଚିତ ମନେକଲି ଯେ, ଆପଣ ଚେଇଁଛନ୍ତି କି ଶୋଇଛନ୍ତି । ମୁଁ ଆଉ କେତେବେଳେ ଆସିବି ।" ଏହାପରେ ବହୁତ ଡେରିଯାଏ ନିଦ ହେଲାନି ।

ଦିନେ ଗୋଟିଏ ଉତ୍ପାତିଆ ଟୋକା ମୋତେ ଅଳ୍ପ ଅଳ୍ପ ସମୟ ବ୍ୟବଧାନରେ ହଇରାଣ କରିବା କାରବାର ଆରମ୍ଭ କରିଦେଲା । ସବୁଥର ସେ ମୋର ହାଲ ପଚାରୁଥିଲା ଏବଂ ଗୋଟିଏ ଗୀତ ମୋତେ ବୋଲିବାକୁ ଅନୁରୋଧ କରୁଥିଲା । ତିନି-ଚାରିଟି କଲ୍ ପର୍ଯ୍ୟନ୍ତ ମୁଁ ନିଜକୁ ସମ୍ଭାଳି ନେଲି । ପଞ୍ଚମ ଥର ପାଇଁ ଯେତେବେଳେ ଘଣ୍ଟି ବାଜିଲା, ମୁଁ ତାକୁ ଖୁବ୍ ଜୋରରେ ଗାଳି ଦେଲି । ସେକଡ଼େ ସେ ଠୋ ଠୋ ହୋଇ ହସିବାକୁ ଲାଗିଲା । ଷଷ୍ଠ ଥର ମୁଁ ତାକୁ ଅତି କଦର୍ଯ୍ୟ ଗାଳି ଦେଲି । ଯେତେବେଳେ ସପ୍ତମ ଥର ପାଇଁ ଘଣ୍ଟି ବାଜିଲା; ମୁଁ ହାଲୋ କହିବା ସଙ୍ଗେ ସଙ୍ଗେ ଗାଳି ଆରମ୍ଭ କରିଦେଲି । ପ୍ରାୟ ଦୁଇ ମିନିଟ୍-ଯାଏ ତାକୁ ଗାଳି ଦେବାରେ ଲାଗିଲି । ପୁଣି ପଚାରିଲି, "ଏବେ କଅଣ କହୁଛୁ କହ ?"

ଏହାର ଜବାବ୍‌ରେ ଆର ପାଖରୁ ଆବାଜ ଆସିଲା—"ଆରେ ବାବୁ, ତୁମର ଆଜି କଅଣ ହୋଇଗଲା କି ? ନିଜର ପାହ୍ୟା ବିଷୟରେ ସଚେତନ ହେବାକୁ ଭୁଲିଗଲ । ତୁମେ ପାଗଳ ହୋଇଯାଇନା ତ ?" ଏହା ମୋ ଉପରିସ୍ଥ ଅଫିସରଙ୍କ ଆବାଜ ଥିଲା । ମୋର ହାଲ୍ ଖରାପ ହୋଇଗଲା । ମୁଁ ଡରି ଡରି ତାଙ୍କୁ ସବୁକଥା ଶୁଣେଇଦେଲି । ବହୁତ କରି ମୁଁ ତାଙ୍କୁ ବୁଝେଇଦେଲି ଯେ, ଗାଳି ତାଙ୍କ ପ୍ରତି ଉଦ୍ଦିଷ୍ଟ ନଥିଲା; କିନ୍ତୁ ସେହି ଦିନଠାରୁ ମୋ ଅଫିସରଙ୍କ ବ୍ୟବହାର ଏକା-ବେଳକେ ବଦଳିଗଲା । ସେ ସବୁବେଳେ ମୋ ସାଙ୍ଗରେ ଖରାପ ବ୍ୟବହାର କରିଆସୁଛନ୍ତି । ଏବେ ତ ଜାଣିଶୁଣି ସେହି ଅଫିସରଙ୍କୁ ଗାଳି ଦେବାକୁ ଇଚ୍ଛା କରୁଛି । ଯେଉଁ ଗାଳି କି ମୁଁ ଅଜାଣତରେ ଦେଇଥିଲି । ସତେ କଅଣ ମୁଁ ଏମିତି କରିପାରିବି ?

ଟୋକାମାନଙ୍କ ତରଫରୁ ଏପରି ଥଟ୍ଟା ତ ହୋଇଥାଏ । ଏବେ କିନ୍ତୁ ଟୋକୀମାନେ ମଧ୍ୟ ଫୋନ୍‌ରେ ଥଟ୍ଟା କଲେଣି । ଜଣେ ଶ୍ରୀମତୀ ଅଛନ୍ତି, ଯେ କି ଅନେକ ସମୟରେ ମୋ ସ୍ତ୍ରୀଙ୍କୁ ସେ ଫୋନ୍ କରି ମୋର ହାଲ୍ ବୁଝନ୍ତି । ପଚରାଯାଏ—"ଦିନକୁ ଦିନ ମୋ ସ୍ୱାସ୍ଥ୍ୟର କାହିଁକି ଅବନତି ଘଟୁଛି । ମୋ ସ୍ତ୍ରୀଙ୍କୁ କୁହାଯାଏ, ସେ କାହିଁକି ମୋର ଯତ୍ନ ନେଉନାହାନ୍ତି । ମୋର କାର୍ଯ୍ୟକଳାପର ଛଟପିଲି ପଚରାଯାଏ ଏବଂ ମୋ ସ୍ତ୍ରୀଙ୍କୁ ମୋତେ ଏହି ଖବର ଦେବାକୁ କୁହାଯାଏ କି, ମୁଁ କାଲି ଠିକ୍ ଛଅଟାବେଳେ ଅମୁକ ସିନେମାଘର ପାଖରେ ଉପସ୍ଥିତ ରହିବି ।"

ମୋର ମନ ଏସବୁ ବିଷୟରେ ତ ବେଶ୍ ପରିଷ୍କାର, କିନ୍ତୁ ମୋ ସ୍ତ୍ରୀକୁ ମୁଁ କିପରି ବୁଝେଇବି ଯେ ମୁଁ ନିଷ୍ପାପ । ମୋର ସାରା ଜୀବନରେ କେବଳ ଦୁଇଟି ମାତ୍ର ପାପ କରିଛି । ଗୋଟିଏ ପାପ ହେଲା ବିବାହ କରିବା, ଆଉ ଗୋଟିଏ ପାପ ହେଲା ଘରେ ଟେଲିଫୋନ୍ ରଖିବା । ଏହାଛଡ଼ା ମୋ ମୁଣ୍ଡିରେ ଅନ୍ୟ କିଛି ପାପ ନାହିଁ । ଏବେ ମୋ ସ୍ତ୍ରୀ ମୋତେ ସନ୍ଦେହ ଚକ୍ଷୁରେ ଦେଖୁଛନ୍ତି ଏବଂ ବାରମ୍ବାର ଅଫିସକୁ ଫୋନ୍ କରି, ମୋର କାର୍ଯ୍ୟକଳାପ ଉପରେ ନଜର ଦେଉଛନ୍ତି । କୁହନ୍ତୁ ଭଲା, ଏଥିରେ ମୋର କି ଦୋଷ ! ମୁଁ ଘରେ ଫୋନ୍ ଲଗାଇ ମୁସ୍କିଲରେ ପଡ଼ିଗଲି । ଯଦି ଫୋନ୍ ନଥାନ୍ତା, ତେବେ ମୁଁ ଭଦ୍ରଲୋକରେ ଗଣା ହେଉଥାଆନ୍ତି, କିନ୍ତୁ କଅଣ କରିବି; ମୁଁ ବଡ଼ ଅସହାୟ ।



# ମୋ ଗୃହକର

( ହମବ୍ର ନୌକର )

ଜାଣେନା ଏ ଦୁନିଆରେ ପ୍ରଥମ ଲୋକ କିଏ ଥିଲା, ଯେ କି ନିଜ କାମରୁ ନିଜକୁ ବଞ୍ଚେଇବା ପାଇଁ ଗୋଟାଏ ଗୃହକର ଗଢ଼ିଲା । ସେ ଆଜି ଯଦି ଜୀବିତ ଥାଆନ୍ତା, ତେବେ ମୁଁ ତାକୁ ନିଶ୍ଚୟ କଠୋର ଦଣ୍ଡ ଦେଇଥାନ୍ତି, କାରଣ ସେ ନିଜ ଶରୀରକୁ ଟିକିଏ ଆରାମ ଦେବାଲାଗି ନିଜ ପଛରେ ଏପରି ଏକ ପରମ୍ପରା ଛାଡ଼ିଦେଇଗଲା ଯେ, ଯାହା ବିନା ମଣିଷର ଜୀବନ ଅପୂର୍ଣ୍ଣ ଜଣାପଡ଼ୁଛି ଏବଂ ମଣିଷ ଅଯଥାରେ ଅନୁଭବ କରୁଛି ଯେପରିକି କୌଣସି କାମ କରିବାକୁ ସକ୍ଷମ ନୁହେଁ ।

ଆଜିକାଲି ଏକ ସୁଖୀ ପରିବାରରେ ଏକ ଗୃହକର, ଫୁଲ ସଙ୍ଗେ କଣ୍ଟା ପରି ଅପରିହାର୍ଯ୍ୟ ହୋଇପଡ଼ିଛି । ମୁଁ ଏପରି ଅନେକ ବନ୍ଧୁ ଦେଖିଛି, ଯେଉଁମାନେ କି ସମାଜରେ ନିଜର ସମ୍ମାନ ଉଞ୍ଚା ରଖିବା ଲାଗି ନିଜ ଘରେ ଗୃହକର ରଖନ୍ତି । ଆଉ ଗୃହକର ରଖିବା ସେମାନଙ୍କର ଏକ ସଉକ୍ । ଏହା, ଜଣେ ବଡ଼ ସଉକ୍‌ରେ ନିଜ ଘରେ ଏକ ବିଲୁଡ଼ି ପୋଷିବା ଆଉ ନିଜଠାରୁ ବିଲୁଡ଼ିର ଅଧିକ ହେପାଜତ ନେବାଭଳି କଥା । ଏହିପରି ମାଲିକଙ୍କ ଗୃହକର ଏକ ଦର୍ଶମାସ୍ତ୍ର ଗୃହକର ଅଟନ୍ତି । ସେମାନଙ୍କଠାରୁ କାମ ଆଦାୟ କରିବା ସେମାନଙ୍କର ଉଦ୍ଦେଶ୍ୟ ନୁହେଁ ବରଂ ପ୍ରଦର୍ଶନ କରେଇବା ଅସଲ ଉଦ୍ଦେଶ୍ୟ । ଏପରି ଗୃହକମାନଙ୍କର ଭଲଭାବରେ ଲାଳନପାଳନ କରାଯାଏ । ଏହିଭଳି ଗୃହକରମାନଙ୍କର କାମ କେବଳ ହେଲା, ସେ ଲୋକଙ୍କ ଉପରେ ନିଜ ମାଲିକର ସାମାଜିକ ସ୍ଥିତିର ଗୁରୁତ୍ୱ ଜାହିର କରିବା ଆଉ ତା'ଛଡ଼ା ଅନ୍ୟ କିଛି କାମ ନକରିବା । ଯଦି କୌଣସି ଘରେ ଏପରି ଗୃହକର ଥାଏ, ତେବେ ସେଠାରେ

ମାଲିକ ଓ ଗୃହକର ଭିତରେ ତଫାତ୍‌ଟା ବାରିବା କଷ୍ଟକର, କାରଣ ଗୃହକରଟି କପରି ଚଳାଇ ନଯାଉ ଏହି ଉପରେ ସେ ଗୃହକର ପାଇଁ ଏପରି ସବୁ ବ୍ୟବସ୍ଥା କରେ ଯେ, ସେ ନିଜେ(ମାଲିକ) ତାର(ଗୃହକରର) ଗୃହକର ବୋଲି ସନ୍ଦେହ ହୁଏ । ଏହିପରି ଗୃହକରଙ୍କ ଛଡ଼ା- ଆହୁରି ଅନେକ ଗୃହକର ଅଛନ୍ତି ଯେଉଁମାନଙ୍କୁ ସତରେ କାମ କରିବାକୁ ପଡ଼େ । କିନ୍ତୁ ଏମାନେ ଯେତେ କାମ କରନ୍ତି, ତହିଁରୁ ଅଧିକ ଅଭିଶାପ ଆପଣା ମାଲିକଙ୍କୁ ଦିଅନ୍ତି ।

ଶୁଣାଯାଏ ଯେ ଏକ ସମୟରେ ଗୃହକରମାନେ ବଡ଼ ବିଶ୍ୱସ୍ତ ଥିଲେ । ଏତେ ବିଶ୍ୱସ୍ତ ଯେ ସେମାନେ ଆପଣା ମାଲିକ ଲାଗି ନିଜ ଜୀବନ ମଧ୍ୟ ଉତ୍ସର୍ଗ କରିଦେଉଥିଲେ । କିନ୍ତୁ ଏବେ ଗୃହକରମାନଙ୍କର ଏତିକି ବି ସଚ୍ଚୋଟପଣିଆ ନାହିଁ କି ସେମାନେ ନିଜ ମାଲିକ ପାଇଁ ନିଜ ଦରମାଟା ଉତ୍ସର୍ଗ କରିଦେବେ । ମାଲିକଙ୍କୁ ଦରମା ମିଳୁ ବା ନମିଳୁ, ଗୃହକରର ଦରମାଟା କିନ୍ତୁ ପହିଲାକୁ ପହିଲା ମିଳିଯିବା ଦରକାର । ଫଳ ଏପରି ହେଲାଣି ଯେ ଗୃହକରର ସଚ୍ଚୋଟପଣିଆ ଅପେକ୍ଷା ମାଲିକର ସଚ୍ଚୋଟ-ପଣିଆ ଉପରେ ଅଧିକ ଗୁରୁତ୍ୱ ଦିଆଗଲାଣି ।

ମୋର ଥରେ ଗୋଟିଏ ଗୃହକରର ଦରକାର ପଡ଼ିଲା । ମୁଁ ଏହା ଠିକ୍ କଲି ଯେ ତାକୁ ଗୃହକରରେ ରଖିବା ପୂର୍ବରୁ ତାକୁ କେତୋଟି ଦରକାରୀ ପ୍ରଶ୍ନ ପଚାରିନେବା ଦରକାର ଯେ, ସେ କେଉଁଠି ରହୁଛି, କି କି କାମ କରିପାରିବ, ପୂର୍ବରୁ କି କି ଅଭିଜ୍ଞତା ଅଛି ଇତ୍ୟାଦି । କିନ୍ତୁ ମୁଁ ତାକୁ ଏସବୁ ପଚାରିବା ପୂର୍ବରୁ ସେ ମୋର ଇଣ୍ଟରଭ୍ୟୁ ନେବା ଆରମ୍ଭ କରିଦେଲା । ସେ ପ୍ରଥମେ ମୋର ବଂଶାନୁ ପଚାରିଲା । ପୁଣି ପଚାରିଲା, ମୁଁ କେତେ ଦରମା ପାଏ, ଆୟର ଅନ୍ୟ କି କି ପନ୍ଥା ଅଛି, ପିଲାକବିଲା କେତେ, ପୂର୍ବ ଗୃହକରମାନଙ୍କ ସହିତ ମୋର କପରି ବ୍ୟବହାର ଥିଲା, ଦରମା କେଉଁ ତାରିଖରେ ମିଳେ, ମୋ ସ୍ତ୍ରୀ ଚଡ଼ଚଡ଼ା ମିଜାଜ ଅଛି କି ନା । ଆଉ ଯେତେବେଳେ ମୁଁ ଏସବୁ ପ୍ରଶ୍ନର ସଠିକ୍ ଉତ୍ତର ଦେଇପାରିଲି, ସେତେବେଳେ ସେ ଘୋଷଣା କଲା—"ମୁଁ ଆଜିଠାରୁ ତୁମକୁ ମୋ ମାଲିକ ପଦରେ ନିଯୁକ୍ତ କଲି; ଆଉ ଏହାର ଫଳ ସ୍ୱରୂପ ତୁମକୁ ଖାଇବା ଗୁଡ଼ ପ୍ରତ୍ୟେକ

ମାସ ତିରିଶ ଟଙ୍କା ଦେବାକୁ ପଡ଼ିବ ।" ମୁଁ ମାଲିକହେବାର ନିଯୁକ୍ତିଟାକୁ ତ ଗ୍ରହଣ କରିନେଲି କିନ୍ତୁ ମୋତେ ତା'ଠାରୁ ଏତେ ଜୁଲମ ସହିବାକୁ ପଡ଼ିଲା ଯେ, ମୋତେ ନିଜ ଘରଛାଡ଼ି ପଳାଇବାକୁ ପଡ଼ିଲା । ସେହି ଚାକରର ଏତେ ଗୁମାନ (ଲାଜ) ମୋତେ, ମୁଁ ନିଜେ ଓପାସରେ ରହେ ଅଚଳକେ ଚାକରର ପେଟ ପୂରୁଥିଲା । ଭଲକି ଭଲ ଦୁଃଖ ମୁଁ ସହ୍ୟ କରୁଥିଲି କିନ୍ତୁ ଚାକର ନିକଟରେ ମୁଁ ପାଟି ଫିଟେଇ ପାରୁନଥିଲି । ସେ ଚାକରର ଅତିଥି ସତ୍କାର କରୁ କରୁ ମୁଁ କରଜରେ ବୁଡ଼ିଗଲି । ଶେଷରେ ବିନା ଚାକରରେ ଜୀବନ କଟେଇବା ପାଇଁ ବାଧ୍ୟ ହେବାକୁ ପଡ଼ିଲା ।

ଆଉ ଗୋଟିଏ ଚାକର କଥା ମୋର ମନେପଡ଼ୁଛି । ମୁଁ ତାକୁ ଚାକିରିରେ ରଖିଲାବେଳେ, ତାହାର କାମଗୁଡ଼ାକ ଦେଖାଇଦେଲି । ଆଗରୁ ହୁସିଆର ହୋଇ ଏହା ମଧ୍ୟ ତାକୁ ଜଣେଇଦେଲି ଯେ, ମୋ ଘରକୁ ଅନେକ ସମୟରେ ଅତିଥିମାନେ ଆସନ୍ତି । ତେଣୁ ଅଗ୍ରିମ ଏଭଳି ବିପଦ ପାଇଁ ପ୍ରସ୍ତୁତ ରହିବାକୁ ପଡ଼ିବ ।

ଏଥିରେ ସେ କହିଲା, "ଆପଣ ଚିନ୍ତା କରନ୍ତୁ ନାହିଁ । ଏପରି ଘଟଣାରେ ମୁଁ ବିଚକ୍ଷଣପଣର ବାନ୍ଧ ତିଆରି ହୋଇ ରହିଥିବି ।" ମୋର ଚାକର ନିହାତି ଦରକାର ଥିଲା, ତେଣୁ ମୁଁ ତାକୁ ଚାକିରିରେ ରଖିଲି । କିନ୍ତୁ ତା'ପରେ ମୋ ଘରେ ଏପରି ଏକ ବିପ୍ଳବ ଆସିଲା ଯେ ତାକୁ କାବୁ କରିବାର ଚେଷ୍ଟାରେ ମୁଁ ନିଜେ ବେକାବୁ ହୋଇଗଲି । ମୋ ସ୍ତ୍ରୀର କାମକୁ ଉଶ୍ୱାସ କରିବା ପାଇଁ ମୁଁ ତାକୁ ଚାକିରିରେ ରଖିଥିଲି କିନ୍ତୁ ସେ ପ୍ରଥମ ଦିନରେ କାମ ବାଣ୍ଟିଦେବାକୁ ଦାବି କଲା । କହିଲା—"ମୋତେ ସର୍ଦ୍ଦିଧରେ ବୋଲି ମୁଁ ବାସନ ଧୁଏ ନାହିଁ, ଧୂଳି-ପେଲା ହେତୁ ମୁଁ ଝାଡ଼ୁ ଦେବିନାହିଁ । ଧୂଆଁ ମୋ ଫୁସ୍‌ଫୁସ୍‌କୁ ଖରାପ କରେ ବୋଲି ମୁଁ ରୋଷେଇ କରିବିନାହିଁ । ଗୋଡ଼ରେ ପୋଲିଓ ହୋଇଥିବାରୁ ମୁଁ ସଉଦା ଆଣିପାରିବିନାହିଁ ।" ସେ ବଡ଼ ହୁସିଆର ହୋଇ ନିଜ ପାଇଁ ଦୁଇଟି ମାତ୍ର କାମ ରଖିଲା । ତାହା ହେଲା—ଖାଇବା ଓ ଶୋଇବା । ଫଳ ଏଇଆ ହେଲା ଯେ ଏହି ଚାକର ସମସ୍ୟା ଉପରେ ମୋ ସ୍ତ୍ରୀ ଓ ମୋ ଭିତରେ ଲଢ଼େଇ ଭିଡ଼େଇ ଲାଗିଗଲା । ଆଉ ମୁଁ ଓ

ମୋ ସ୍ତ୍ରୀ ଝଗଡ଼ା କରୁଥାଉ; ଆଉ ସେ ତା କୋଠରିରେ ଆରାମରେ ଶୋଇଥାଏ । ସେ କାଳମା ଦାଗ ଆମ ଝଗଡ଼ାଟା ମେଣ୍ଟି ହୋଇଯିବାର ବି ସମ୍ଭାବନା ନଥିଲା । ଦିନେ ଅଫିସରୁ କ୍ଳାନ୍ତ ହୋଇ ଫେରି ମୁଁ ଦେଖିଲି କି ମୋ ଚାକର ରାଗ ହୋଇ ବସିଛି । ମୁଁ ପହଞ୍ଚିବା ମାତ୍ରେ ସେ କହିଲା—"ବାବୁ ! ଆଜି ଏହି ବିଷୟରେ ଗୋଟାଏ ଫଇସଲା ହୋଇ-ଯିବା ଦରକାର । ଆଜଠୁଁ ଏ ଘରେ ହୁଏତ ମୁଁ ରହିବି କିମ୍ବା ଆପଣଙ୍କ ସ୍ତ୍ରୀ ରହିବେ । ମୁଁ ବାବୁଆଣୀଙ୍କ ଗାଳି ଓ ଆକଟରେ ବିବ୍ରତ ହୋଇ-ପଡ଼ିଲାଣି । ତେଣୁ ଆପଣ ହୁଏତ ଆପଣଙ୍କ ସ୍ତ୍ରୀକୁ ଛାଡ଼ନ୍ତୁ କିମ୍ବା ମୋତେ ଛାଡ଼ନ୍ତୁ ।" ମୁଁ ବିବ୍ରତ ହୋଇ ତା ମୁହଁକୁ ଚାହିଁରହିଲି । ମୋର ଯଦି କ୍ଷମତା ଥା'ନ୍ତା, ତେବେ ମୁଁ ତା ପାଇଁ ମୋ ସ୍ତ୍ରୀକୁ ଛାଡ଼ିଦେଇଥା'ନ୍ତି କିନ୍ତୁ ଅଡୁଆ ଥିଲା ଯେ, ସ୍ତ୍ରୀକୁ ଛାଡ଼ିବା ପାଇଁ ଯୌତୁକ ଫେରେଇବା ପାଇଁ ଯୋଗାଡ଼ କରିବା ଦରକାର; ଯାହାକି ମୁଁ କରିପାରୁନଥିଲି । ସୁତରାଂ ଛାତିକୁ ପଥର କରି ଚାକରକୁ ଚାଲିଯିବା ପାଇଁ ଅନୁମତି ଦେଇ-ଦେଲି । ଏ ଅନୁମତି ଦେବାର ଫଳ ଏଇଆ ହେଲା ଯେ ସେ ମୋ ଘଣ୍ଟାଟି ସ୍ମୃତି ସ୍ୱରୂପ ନେଇଗଲା । ଏହାପରେ ମୋ ଜୀବନରେ ଏପରି ଏକ ଖରାପ ସମୟ ଆସିଲା କି ଘଣ୍ଟାରେ ସମୟ ଦେଖିବାକୁ ଆଉ ଦରକାର ପଡ଼ିଲାନାହିଁ ।

ଅନେକ ଚାକର ଅଛନ୍ତି ଯେଉଁମାନଙ୍କ ଭୃତ୍ୟପଣ ଅପେକ୍ଷା ଗୁପ୍ତଚରଗିରି ଅଧିକ । ଘରର ଛୋଟ ଛୋଟ କଥାକୁ ପଦାରେ ପ୍ରକଟ କରିବାଟାକୁ ସେମାନେ ପ୍ରଥମ କର୍ତ୍ତବ୍ୟ ବୋଲି ମନେକରନ୍ତି । ଏହି କାରଣରୁ ସାହିଟାଯାକ ସମସ୍ତେ ମୋର ଦୁର୍ବଳତାଗୁଡ଼ିକ ଜାଣନ୍ତି । ସେମାନେ ଜାଣନ୍ତି ଯେ ମୁଁ ଋଣଗ୍ରସ୍ତ । ସେମାନେ ଏହା ମଧ୍ୟ ଜାଣନ୍ତି ଯେ ମୁଁ ସ୍ତ୍ରୀଙ୍କୁ ଭାରି ଡରେ ଆଉ ତାଙ୍କ ପ୍ରତ୍ୟେକ ଗାଳିମନ୍ଦକୁ ଭଜା-ଯାଇଥିବା ବିରିଡ଼ିପରି ସହିଯାଏ । ସାହିବାଲାଏ ଏହା ମଧ୍ୟ ଜାଣନ୍ତି ଯେ ମୋ କୋଟ୍‌ତଳେ କାମିଜ ନଥାଏ । ଜୋତା ଭିତରେ ଥିବା ମୋ ମୋଜା ଫାଟିଯାଇଛି । ଚାରିମାସ ହେଲା ଘରଭଡ଼ା ଦେଇନି । ପିଲାଙ୍କ ସ୍କୁଲ୍ ଦରମା କେତେମାସ ହେଲା ଦେଇନି । ଏସବୁ କାରଣରୁ ମୁଁ ଯେତେବେଳେ ପଦାକୁ ବାହାରେ, ସେତେବେଳେ ମୋତେ ଭାରି ଲାଜ ଲାଗେ । ଯଦି ଯଦି ମୋ ଘରେ ଚାକର ନଥାନ୍ତେ, ତେବେ ମୁଁ

ସାହବାନ୍‌ଙ୍କ ପାଖରେ ଖୁବ ସମ୍ମାନାସ୍ପଦ ଭାବରେ ଗଣ୍ୟ ହୋଇଥାନ୍ତି ଆଉ ଗୁଡ଼ିଏ ଫୂଲେଇ ଗୁଲୁଥାଆନ୍ତି । କିନ୍ତୁ ମୁଁ ନାଗୁର, କାରଣ ମୁଁ ଗୋଟିଏ ଗୃହଚରର ମାଲିକ ଅଟେ । ଆଜିକାଲି ମଡ଼ର୍ଣ୍ଣ ଗୃହଚରମାନଙ୍କର ଗୋଟାଏ ଜାତି ସୃଷ୍ଟି ହୋଇଗଲାଣି; ଯିଏ କି ଦାନାକନା ପାଇଁ ଗୃହଚର କରିବାକୁ ପ୍ରସ୍ତୁତ ନୁହନ୍ତି । ମୁଁ ଏହିପରି ଗୋଟିଏ ଗୃହଚରକୁ କହିଥିଲି—"ମୁଁ ତୁମକୁ ଖୁଆଇପିଆଇ ତିରିଶ ଟଙ୍କା ଦେବି ।" ଏଥିରେ ସେ କହିଥିଲା—"ଆଜ୍ଞା ନା, ମୁଁ ଏ ସର୍ତ୍ତରେ କାମ କରିପାରିବି ନାହିଁ । ମୋର ଖାଇବା ପିଇବା ଏତେ ଜରୁରୀ ନୁହେଁ । ଭଗବାନ ମୋତେ ବହୁତ କିଛି ଦେଇଛନ୍ତି । ପ୍ରତିଦିନ ସିନେମା ଦେଖିବାପାଇଁ ମୋର ପଇସା ଦରକାର, କାରଣ ଖାଇବା ବିନା ମଣିଷ ବଞ୍ଚି ରହିପାରେ କିନ୍ତୁ ଛବି ନଦେଖିଲେ ମୁଁ ଅଣନିଶ୍ୱାସ ହୋଇଯାଏ ।"

ସୁତରାଂ ବର୍ତ୍ତମାନ ଆମଘରେ ଏହି ଫିଲ୍ମ ଗୃହଚର କାମ କରୁଛି । ସେ ସନ୍ଧ୍ୟା ହେବାମାତ୍ରେ ଘରୁ ଗାଏବ ହୋଇଯାଉଛି ଏବଂ ସକାଳେ ଏତେ ଡେରିରେ ଉଠୁଛି ଯେ ସେତେବେଳକୁ ଘରର କାମ କିଛି ବାକି ନଥାଏ । ସେ ଫିଲ୍ମ ଅଭିନେତାଙ୍କପରି ଜୀବନ ଅତିବାହିତ କରୁଛି । ମୋତେ ଚାହା ପିଆଲା ବଢ଼େଇ ଦେଲାବେଳେ ସେ ଏପରି ଅଙ୍ଗଭଙ୍ଗୀ କରୁଛି, ଯେପରି କି ଏସବୁର ସୁଟିଂ ଚାଲିଛି । ସେ ଏପରି ଅଙ୍ଗଭଙ୍ଗୀ କରିବା ଫଳରେ କେତେଥର ମୋ ଲୁଗା ଉପରେ ଚାହା ପିଆଲା ପକେଇ ସାରିଲାଣି । ମୁଁ ତାକୁ ବୁଝେଇ ବୁଝେଇ ନାକଦମ ହୋଇଗଲିଣି । ମନ ହେଉଛି ବିନା ଗୃହଚରରେ ଦିନ କଟେଇ ଦେବି କିନ୍ତୁ ମୁସ୍କିଲ କଥା ହେଉଛି, ଘରେ ଗୃହଚର ନଥିଲେ ଲୋକେ ମୋ ଇଜ୍ଜତ ରଖୁନାହାନ୍ତି; ଆଉ ଗୃହଚର ରଖିଲେ ସେ ମୋର ଇଜ୍ଜତ ରଖୁନି । ଏବେ ଆପଣ ବତାନ୍ତୁ ମୁଁ କଅଣ କରିବି ।



# ଚାକିରି ସନ୍ଧାନେ

( ନୌକରି କି ତଲାସ ମେ )

ସୃଷ୍ଟିର ଆରମ୍ଭରୁ ମଣିଷ ଏ ଦୁନିଆଁରେ କିଛି ନା କିଛି ଖୋଜିବାରେ ଲାଗିଛି । କିଏ ଭଗବାନଙ୍କୁ ଖୋଜୁଛି, କିଏ ଘର ଖୋଜୁଛି, କିଏ ସ୍ତ୍ରୀ ଖୋଜୁଛି । ଯାହାର କିଛି ଖୋଜିବାକୁ ନାହିଁ, ସେ କଅଣ ଖୋଜିବ; ତାହାରି ତଲାସରେ ଅଛି । ଦୁର୍ଭାଗ୍ୟକୁ ମୋ କପାଳରେ ଚାକିରି ଖୋଜା ଆସିଲା ଏବଂ ଚାକିରି ଖୋଜା ଦୁନିଆଁର ଏକମାତ୍ର ମୁସ୍କିଲ୍ କାମ ଯେ, ମନୁଷ୍ୟ କ୍ଷୀରନଈ ବୁହାଇ ଆଣିପାରେ କିନ୍ତୁ ଚାକିରି ଖୋଜିପାରିବ ନାହିଁ । ଯେତେବେଳ ପର୍ଯ୍ୟନ୍ତ ବାପ-ମାଆଙ୍କ ରୋଜଗାରରେ ମୁଁ ମଉଜ କରୁଥିଲି, ସେତେବେଳେ ସ୍ୱପ୍ନରେ ବି ଭାବି ନଥିଲି ଯେ ଚାକିରି ଖୋଜାରେ ଏତେ ପାମ୍ପଡ଼ ବେଲିବାକୁ ପଡ଼ିବ । ପାମ୍ପଡ଼ର ଗଦା ହୋଇଯିବ, ହେଲେ ଚାକିରି ମିଳିବ ନାହିଁ । ସାଧାରଣତଃ ଚାକିରି-ଖୋଜା କାମ ମଣିଷ କୋଡ଼ିଏ ବର୍ଷ ବୟସରୁ ଆରମ୍ଭ କରେ; ଆଉ ଷାଠିଏ ବର୍ଷଯାଏ ଭଲ ଭାବରେ ଜାରିରଖେ । ତାପରେ ଚାକିରି ଖୋଜିବା ପ୍ରଶ୍ନ ଏଇଥିପାଇଁ ଉଠେନି କି ସେତେବେଳେ ମୃତ୍ୟୁ ତାକୁ ଭଲ ଭାବରେ ଖୋଜିପକାଏ ।

ଯେତେବେଳେ ମୁଁ ବାପା-ମା'ଙ୍କର ପ୍ରଚୁର ଧନ ବରବାଦ କରି ଏବଂ ପରୀକ୍ଷାରେ ଲାଗ ଲାଗ କପି କରି ଶିକ୍ଷା ସମାପ୍ତ କଲି; ସେତେବେଳେ ଯାଇ ଜାଣିଲି, ଆସନ୍ତା କେତେବର୍ଷ ଯାଏ ମୋତେ ଚାକିରି ଖୋଜିବାକୁ ପଡ଼ିବ । ଚାକିରି କେମିତି ଖୋଜିବାକୁ ହୁଏ, ସେ ଧାରଣା ମୋର ନଥିଲା । ତେଣୁ ମୋତେ ଆଗରୁ ବର୍ଷ ବର୍ଷ ଧରି ଚାକିରି ଖୋଜୁଥିବା ସୁଦକ୍ଷ ଲୋକମାନଙ୍କଠାରୁ ପରାମର୍ଶ ନେବାକୁ ପଡ଼ିଲା ।

ମୋତେ ପରାମର୍ଶ ଦିଆଗଲା ଯେ ମୁଁ ପ୍ରତିଦିନ ଖବରକାଗଜମାନଙ୍କରୁ ଖବର ପଢ଼ିବା ପରିବର୍ତ୍ତେ ଚାକିରି ଇସ୍ତାହାରଗୁଡ଼ିକ ପଢ଼ିବି । ଆଜି ଦରଖାସ୍ତ ଉପରେ ଦରଖାସ୍ତ ପଠାଉଥିବି ସେପର୍ଯ୍ୟନ୍ତ କୌଣସି ନା କୌଣସି ଚାକିରି ପଦରେ ନିଯୁକ୍ତ ନ ହୋଇଛି । ମୁଁ ତହିଁଆର ଦିନଠାରୁ ଖବରକାଗଜରେ ସେସବୁ ପଢ଼ିବା ଆରମ୍ଭ କରିଦେଲି, କିନ୍ତୁ ପ୍ରତି ଇସ୍ତାହାର ପଢ଼ିବା ପରେ ମୋର ହତାଶା ଆହୁରି ବଢ଼ି-ଯାଉଥାଏ । କାରଣ କୌଣସି ଚାକିରି ପାଇଁ ଯେଉଁ ଦକ୍ଷତା ଦରକାର, ସେଥିପାଇଁ ମୁଁ ଯୋଗ୍ୟ ନଥାଏ । ଯଦି ମୁଁ ସେହି ଦକ୍ଷତା ହାସଲ କରିବାକୁ ଚେଷ୍ଟାକରେ ତେବେ ଭୟଥାଏ, ସେତେବେଳକୁ ଦରଖାସ୍ତ ଦେବାର ଶେଷ ତାରିଖ ଗଡ଼ିଯିବ । ଏକ ଅଜବ ଦ୍ୱନ୍ଦ୍ୱରେ ମୁଁ ପଡ଼ୁଯାଏ । ଯଦି କୌଣସି ଇସ୍ତାହାରରେ ମୁଁ ଶିକ୍ଷା ଯୋଗ୍ୟତାକୁ ପୂର୍ଣ୍ଣ କରିନଏ, ତେବେ ବୟସ ସୀମା ଉପରେ ନଜର ପଡ଼ିଲାବେଳକୁ ଜଣାଯାଏ ଯେ ଏହି ଇସ୍ତାହାରକୁ ମୋର ଦୁଇବର୍ଷ ପୂର୍ବରୁ ପଢ଼ିବାର ଥିଲା । କେବେ ବୟସ ଆଗେ ବଢ଼ିଯାଏ, କେବେ ଶିକ୍ଷା ଯୋଗ୍ୟତା ପଛକୁ ରହିଯାଏ । କେତେବେଳେ ଶିକ୍ଷା ଯୋଗ୍ୟତା ଯଦି ଅନୁକୂଳ ହୁଏ, ବୟସ ସୀମା ଦଗା ଦିଏ । ଏହିସବୁ ଅବସ୍ଥାରେ ମୋର ଭଗବାନଙ୍କ ଉପରେ ରାଗ ଆସେ । ସେ କାହିଁକି ମୋତେ ଆଗରୁ ଜନ୍ମ ଦେଲେ । ମୁଁ ଅନୁଭବ କରୁଥିଲି ଯେ ଏହି ବିଜ୍ଞାପନ ଦେଉଥିବା କୋମ୍ପାନି ଓ ଦପ୍ତରମାନଙ୍କୁ ମୋର ଏହି ସବୁ ଦୁର୍ବଳତା ଜଣାଅଛି ଏବଂ ସେମାନେ ଖୁବ୍ ହୁସିଆର ସହିତ ଏହି ବିଜ୍ଞାପନ ସବୁ ଦେଉଛନ୍ତି; ଯେପରି କି ମୋତେ ସେ ଚାକିରି ନମିଳିବ । ବଡ଼ ମୁସ୍କିଲରେ ଦିନେ ଖବରକାଗଜର ଏପରି ଏକ ବିଜ୍ଞାପନରେ ନଜର ପଡ଼ିଲା, ଯାହା ପାଇଁ ମୋର ସନ୍ଦେହ ହେଲା କି ମୋର ଅବସ୍ଥାକୁ ଆଖିଆଗରେ ରଖି ଏହି ବିଜ୍ଞାପନ ଦିଆଯାଇଛି ଏବଂ ମୁଁ କେବଳ ଏଥିପାଇଁ ଏକମାତ୍ର ଯୋଗ୍ୟ ପ୍ରାର୍ଥୀ । ମୁଁ ଖୁସିରେ ଉଛୁଳି ପଡ଼ିଲି । ମୁଁ ବହୁ ବନ୍ଧୁଙ୍କଠାରୁ ଅଗ୍ରୀମ ବଧେଇ ସଂଗ୍ରହ କରିନେଲି । ସାରା ପରିବାରରେ ମୁଁ ଘୋଷଣା କରିଦେଲି ଯେ ଏବେ ଚାକିରି ନିଶ୍ଚୟ ମିଳିବ । ତେଣୁ ସମସ୍ତେ ହୁସିଆର ହୋଇଯାଅ; ମୋ ଜୀବନର ଗତି ବଦଳିବାକୁ ଯାଉଛି । ଆଉକୁ ମୋତେ କେହି ଘୃଣା ଚକ୍ଷୁରେ ନଦେଖ, ଆଉ ମୋତେ ଦୂର୍ ଦୂର୍ ନକରୁ । ବହୁତ ବେଳଯାଏ

ମୁଁ ଚାକିରିର ସ୍ୱପ୍ନ ଦେଖିଆସିଲି । ବାପମା'ଙ୍କୁ କହିଦେଲି, "ଆପଣଙ୍କର ଆଉ ଅଧିକ କଷ୍ଟ ଉଠେଇବା ଦରକାର ନାହିଁ ।"

ବହୁ ଅପେକ୍ଷା ପରେ ଉକ୍ତ ଅଫିସରୁ ଏକ ଚିଠି ଆସିଲା, ଅମୁକ ତାରିଖ ଦିନ ଠିକ୍ ଦିନ ଦଶଟାବେଳେ ଏହି ଅଫିସକୁ ସାକ୍ଷାତକାର ପାଇଁ ଆସନ୍ତୁ । ସେହି ଚିଠି ପାଇ ମୁଁ ବହୁତ ଖୁସି ହେଲି । ମୋତେ ଏପରି ଜଣାଗଲା କି ଅମୁକ ତାରିଖ ଠିକ୍ ଦଶଟା ବେଳେ ମୁଁ ଚାକିରିରେ ନିଯୁକ୍ତ ହୋଇଯିବି । ଏତିକି ବି ମୁଁ ଭାବିଲିନାହିଁ ଯେ ଗୋଟିଏ ସାକ୍ଷାତକାରର କଷ୍ଟ ମଧ୍ୟ ମୋତେ ଉଠେଇବାକୁ ଅଛି । ଆରେ ବାବୁ ମୁଁ ନିର୍ଦ୍ଧାରିତ ସମୟରେ ସେହି ଅଫିସ୍‌ରେ ପହଞ୍ଚି ଦେଖେ ତ, ସେଠାରେ ଯୁବକମାନଙ୍କର ଏକ ଭିଡ଼ ଲାଗିଯାଇଛି । ସେମାନଙ୍କର ଆଗମନର କାରଣ ପଚାରି ବୁଝିଲି ଯେ, ମୁଁ ଯେଉଁ ଚାକିରି ଚାଲସରେ ଆସିଛି, ସେମାନେ ସେହି ଚାକିରି ଚାଲସରେ ଆସିଛନ୍ତି । ପଚାରିଲି—"କେତୋଟି ଚାକିରି ଖାଲି ଅଛି ?" ଜବାବ ମିଳିଲା 'ଏକ' । ଏ ଉତ୍ତର ଶୁଣିବା ମାତ୍ରେ ମୋ ହାତରୁ ବି. ଏ. ସାର୍ଟିଫିକେଟ୍‌ଟି ଖସିପଡ଼ିଲା । ମୋର ହୋସ୍ ବୁଡ଼ିଗଲା । ମୁଁ ବଡ଼ କଷ୍ଟରେ ନିଜକୁ ସମ୍ଭାଳି ନେଲି, ଆଉ ସାକ୍ଷାତକାର ପାଇଁ ମୋର ସମୟକୁ ଅପେକ୍ଷା କରି ରହିଲି । ସାକ୍ଷାତ୍କାରରେ ମୋତେ କଅଣ ପଚରାଯିବ, ତାହା ମୋତେ ଜଣାନଥିଲା । ସେମିତିଆ ବି କଲେଜରୁ ବାହାରିବା ଦଶମାସ ହୋଇଯାଇଥିଲା । ଆଉ ଇତିହାସ କି ଭୂଗୋଳର କିଛି ପାଠ ମୋର ମନେନଥିଲା; ଆଉ ଚଳନ୍ତି ଘଟଣା-ବଳୀ ବି କିଛି ଜାଣି ନଥିଲି, କାରଣ ଗତ ଦଶମାସ ଧରି ଖବରପତ୍ରକୁ ମୁଁ ଅଦରକାରୀ ଭାବୁଥିଲି । ଯେତେବେଳେ ଅପେକ୍ଷାର ସମୟ ଗଡ଼ିଗଲା, ଆଉ ମଧ୍ୟାହ୍ନରେ ସାକ୍ଷାତ୍‌କାର ପାଇଁ ମୋର ନାମ ଡକାହେଲା, ସେତେବେଳେ ମୁଁ ଭଗବାନଙ୍କ ନାମ ସ୍ମରଣକରି ଏପରି ଏକ କୋଠରିରେ ପଶିଲି; ଯେଉଁଠାରେ କି ତିନିଜଣ ଭଦ୍ରବ୍ୟକ୍ତି ମୋତେ ଅପେକ୍ଷା କରିଥିଲେ । କୋଠରିରେ ପଶିବା ମାତ୍ରେ ମୁଁ ଘାବେଇଗଲି । ମୁଁ ଚୁପ୍‌ଚାପ୍ ଗୋଟିଏ କୋଣରେ ଠିଆ ହୋଇଗଲି । କିନ୍ତୁ ବେଳ-ଯାଏ ତିନିଜଣଯାକ ମୋତେ ଏପରି ଭାବରେ ଗାରେଡ଼େଇ ଚାହିଁଲେ, ଯେପରିକି ମୁଁ ଗୋଟିଏ ମଣିଷ ନୁହେଁ, ବରଂ ଏପରି ମନେହେଲା, ଯେପରିକି କିଛିକ୍ଷଣ ପରେ ସେମାନେ ମୋ ଉପରେ ଆକ୍ରମଣ କରିବେ

କରିଦେବେ । ମୋର ଖିଆଲ ବୋହିଗଲା । ଆଖି ଆଗରେ ଅନ୍ଧାର ଘୋଟିଗଲା । ଗୋଡ଼ ଏଣେତେଣେ ପଡ଼ିବାକୁ ଲାଗିଲା । ମୁଁ ବେହୋସ୍ ହୋଇ ଭୂଇଁରେ ପଡ଼ିବା ପୂର୍ବରୁ ଜଣେ ସାହାବ ନିରବତା ଭାଙ୍ଗି ପଚାରିଲେ—"ସିକନ୍ଦର କେବେ ଭାରତ ଉପରେ ଆକ୍ରମଣ କରିଥିଲେ ?"

ମୁଁ ଖନେଇ ଖନେଇ କହିଲି—"ମୋର ଜନ୍ମ ହେବା ପୂର୍ବରୁ ।"

ଏଥିରେ ଇଣ୍ଟରଭ୍ୟୁ ବୋର୍ଡ଼ର ସଭ୍ୟମାନେ ଏପରି ହସିଲେ, ଯେପରିକି ସିକନ୍ଦରଙ୍କ ଭାରତ ଆକ୍ରମଣ ପଛରେ ମୋର ହିଁ ହାତ ଥିଲା । ମୁଁ ନିଜକୁ ପରିଷ୍କାର କରିଦେବା ଉଚିତ ଭାବି କହିଲି—"ମୁଁ ଆପଣଙ୍କୁ ମିଛ କହୁନି । ମୁଁ ଜନ୍ମହେବା ପରଠାରୁ ସିକନ୍ଦର କେବେହେଲେ ଭାରତ ଆକ୍ରମଣ କରିନାହାନ୍ତି ।"

ଏହାପରେ ଆଉ ଜଣେ ସାହାବ ପଚାରିଲେ—"ଆମେରିକାକୁ କଲମ୍ବସ୍ କେବେ ଆବିଷ୍କାର କଲେ ?"

ମୁଁ କହିଲି, "ଆମେରିକା ଆବିଷ୍କାରର ତାରିଖ ସହିତ ମୋ ଚାକିରିର ସମ୍ବନ୍ଧ କ'ଣ ? ତେଣୁ ଏପରି ଖାପଛଡ଼ା ପ୍ରଶ୍ନ ପଚାରନ୍ତୁ ନାହିଁ । ମୁଁ ତ ଚାକିରି ଖୋଜି ଆସିଛି । ସିକନ୍ଦରଙ୍କ ଆକ୍ରମଣ ଓ ଆମେରିକା ଆବିଷ୍କାର ସଙ୍ଗେ ମୋର ନେଣଦେଣ କ'ଣ ଅଛି ?" ଏଥିରେ ଇଣ୍ଟରଭ୍ୟୁ ବୋର୍ଡ଼ର ଜଣେ ସଭ୍ୟ ପଚାରିଲେ—"ତୁମ ନାମ କ'ଣ ?"

ମୁଁ ଖୁବ୍ ଖୁସି ହୋଇ ମୋର ନାମ କହି, ଇଣ୍ଟରଭ୍ୟୁ ବୋର୍ଡ଼ର ସଭ୍ୟମାନଙ୍କଠାରୁ ଏହିପରି ସହଜ ପ୍ରଶ୍ନ ଆଶା କଲି । କିନ୍ତୁ ନିଜ ନାଆଁ ସେମାନଙ୍କୁ ବତେଇ ମନେ ମନେ ଖୁସି ହେଉଥିଲା ବେଳେ, ଜଣେ ସଭ୍ୟ ପଚାରିଲେ—"ଦୁନିଆଁରେ କେତୋଟି ମହାଦେଶ ଅଛି ?" ଏଥିରେ ମୁଁ କହିଲି—"ଆପଣଙ୍କୁ ମହାଦେଶର ସଂଖ୍ୟା ନିଶ୍ଚିତ ଭାବରେ ଜଣାଅଛି, କିନ୍ତୁ ମୋତେ କେବଳ ହଇରାଣ କରିବା ଲାଗି ଏଭଳି ପ୍ରଶ୍ନ

ପଚାରୁଛନ୍ତି । କୌଣସି ଦୁଃଖୀ ଲୋକକୁ ଏପରି ହଇରାଣ କରିବା ଭଲକଥା ନୁହେଁ । ସାଫ୍ ସାଫ୍ କହନ୍ତୁ ମୋତେ ଆପଣ ଚାକିରି ଦେବେ କି ନାହିଁ; ଅଯଥା ଏପରି ପ୍ରଶ୍ନସବୁ ପଚାରି ମୋତେ ହଇରାଣ କରନ୍ତୁ ନାହିଁ ।"

ତା'ପରେ ଜଣେ ସଭ୍ୟ ମୋତେ କହିଲେ—"ତୁମେ ଯାଇପାର ।"

ମୁଁ ପଚାରିଲି—"ତେବେ ମୋତେ କହନ୍ତୁ ମୁଁ ଚାକିରିରେ କେବେଠୁ ନିଯୁକ୍ତ ହେବି ?" ସଭ୍ୟ କହିଲେ—"ଆପଣ ଅନ୍ୟ କୌଣସି ସ୍ଥାନରେ ଚାକିରି ଖୋଜନ୍ତୁ । ଆମର ଏପରି ପ୍ରାର୍ଥୀ ଲୋଡ଼ା ନାହିଁ, ଯାହାକୁ କି ମହାଦେଶଗୁଡ଼ିକର ସଂଖ୍ୟା ଜଣାନାହିଁ ।"

ମୁଁ ଆହୁରି କିଛି ଯୁକ୍ତି କରିବାକୁ ଚାହୁଁଥିଲି, କିନ୍ତୁ ଚପରାସୀ ମୋତେ ଖୁବ୍ ହେପାଜତରେ ଆଣି ପଦାରେ ଛାଡ଼ିଦେଲା । ବାହାରକୁ ଆସି ଅନୁଭବ କଲି ଯେ ଚାକିରି ସମ୍ବନ୍ଧରେ ମୁଁ ଯେଉଁ ସ୍ୱପ୍ନ ଦେଖିଥିଲି, ତାହା ଭାଙ୍ଗି ଚୂରମାର ହୋଇଯାଇଛି । ଏହି ଦାରୁଣ ଦୁଃଖ ପରେ ମୁଁ ବହୁଦିନଯାଏ ଚାକିରି ଖୋଜିବାକୁ ଅସମର୍ଥ ହୋଇଥିଲି । ରାତିରେ ଶୋଇଲେ ସିକନ୍ଦର-ଆଜାମ୍‌ଙ୍କର ଆକ୍ରମଣ ମୋ ଉପରେ ସୁରୁ ହୋଇ-ଯାଉଥିଲା । ଇଣ୍ଟରଭ୍ୟୁ ବୋର୍ଡ଼ ସଭ୍ୟମାନଙ୍କ ଚେହେରା ମୋ ଆଖି ଆଗରେ ନାଚୁଥିଲା, ଆଉ ମୁଁ ଚିତ୍କାର କରି ବିଛଣାରେ ଉଠିବସୁଥିଲି ।

ଏହି ଘଟଣାର କିଛିଦିନ ପରେ ମୋତେ ଖବରକାଗଜରେ ଆଉ ଗୋଟିଏ ବିଜ୍ଞାପନ ଦେଖାଗଲା । ଲେଖାଥିଲା—"ଜଣେ ବାବୁଙ୍କର ଏକ ଶିକ୍ଷକ ଦରକାର, ଯିଏ କି ତାଙ୍କ ପିଲାମାନଙ୍କୁ ଘରେ ପଢ଼େଇବ ।" ଆଶାର ଏଇଟା ଶେଷ କିରଣ ଥିଲା । ତେଣୁ ମୁଁ ଖୁବ୍ ଆଶା ନେଇ ସେ ଭଦ୍ରଲୋକଙ୍କ ଦ୍ୱାରରେ ପହଞ୍ଚିଲି । ସେ ମୋତେ ଯାଞ୍ଚ୍ କରି ପଚାରିଲେ—"ଆପଣ କେଉଁ ବିଷୟରେ ଆସିଛନ୍ତି ।" ମୁଁ କହିଲି—"ଆପଣଙ୍କ ତରଫରୁ ଖବରକାଗଜରେ ଶିକ୍ଷକ ଦରକାର ବୋଲି ବାହାରିଥିଲା । ସେହି ସମ୍ପର୍କରେ ମୁଁ ଆସିଛି ।"

ଏଥିରେ ସେ ବାବୁ କହିଲେ—"ବଜାରରୁ ସଉଦା ଆଣିପାରିବ ?"

ମୁଁ କହିଲି—"ନିଶ୍ଚୟ ଆଣିପାରିବ ।" ସେ ପୁଣି ପଚାରିଲେ, "ଘରର କାମଧନ୍ଦା କରି ପାରିବ ?" ମୁଁ କହିଲି, "ଦରକାର ପଡ଼ିଲେ ଏହା ମଧ୍ୟ କରିପାରିବ ?" ସେ ପଚାରିଲେ, "ତୁମକୁ ଖେଳେଇ କରି ଆସେ ?"

ମୁଁ କହିଲି—"ଆଜ୍ଞା ନା ।" ଏହାର ଉତ୍ତରରେ ସେ କହିଲେ, "ତେବେ ମୁଁ ତୁମକୁ ନିଯୁକ୍ତ କରିପାରିବିନାହିଁ । ମୁଁ ଅନ୍ୟ ଗୋଟିଏ ଶିକ୍ଷକ ଖୋଜିନେବି ।" ମୁଁ ପଚାରିଲି—"ହଜୁର୍, ମୁଁ ବୁଝିପାରୁନି ଶିକ୍ଷକ କର୍ତ୍ତବ୍ୟ ସହିତ ସଉଦା ଆଣିବା ଆଉ ଖେଳେଇ କରିବାର ସମ୍ବନ୍ଧ କଅଣ ?" ସେ କହିଲେ—"ଶିକ୍ଷକ ତ ଗୋଟାଏ ବାହାନା । ମୋତେ ଏଭଳି ଲୋକ ଦରକାର, ଯେ କି ଘରର କାମଧନ୍ଦା କରିବ, ବଜାରରୁ ସଉଦା ଆଣିବ ଏବଂ ସମୟ ବଳିଲେ ପିଲାମାନଙ୍କୁ ପଢ଼େଇବ ।"

ମୁଁ ସବୁ କିଛି କରିପାରିବି, କିନ୍ତୁ ବି. ଏ. ଡିଗ୍ରୀର ଅପମାନ ମୁଁ ସହିପାରିବିନି ।

ଏଣୁ ଆଜିଯାଏ ଚାକିରି ଖୋଜାରେ ସାରାଦିନ ସଡ଼କରେ ବୁଲୁଛି, କିନ୍ତୁ ପ୍ରତି ଜାଗାରେ 'ଖାଲି ନାହିଁ'ର ବୋର୍ଡ଼ ହିଁ ଦେଖା-ଯାଉଛି । ଘରେ ଓ ପରିବାର ଭିତରେ ସବୁଆଡ଼ୁ ମୁଁ ବେକାର୍ ହୋଇ ସାରିଲିଣି । ସମସ୍ତେ ମୋତେ ନିନ୍ଦା କରୁଛନ୍ତି । ସାରାଦିନ ଚାକିରି ଖୋଜା ପରେ ଯେବେ ସନ୍ଧ୍ୟାରେ ହତାଶ ହୋଇ ଘରକୁ ଫେରେ, ସେତେ-ବେଳେ ମୋ ଆଗରେ ଖାନା ଏଭଳି ଥୁଆହୁଏ, ଯେପରିକି ଏ ଘରର ମୁଁ ଜଣେ ଲୋକ ନୁହେଁ ବରଂ ଏକ ଅନିମନ୍ତ୍ରିତ ଅତିଥି । ଚୋରଙ୍କ ପରି ମୁଁ ନିଜ ଘର ଲୋକଙ୍କଠାରୁ ମୁହଁ ଲୁଚେଇ ବୁଲୁଛି । ଘରୁ ବାହାରିବା ମାତ୍ରେ ସାହି ପିଲାମାନେ ମୋ ପଛରେ ନାନା ପ୍ରକାର ବୋଲି କରନ୍ତି,

ବରଂ ଅନେକେ ଟେକା ପକାଇବାକୁ ଶୁଭୁନ୍ତନାହିଁ । ତଥାପି ମୁଁ ଆଜଯାଏ ସାହସ ହରେଇନାହିଁ । ମୁଁ ସେହି ଦିନର ଅପେକ୍ଷାରେ ଅଛି, ଯେଉଁଦିନ କ ମତେ ସତରେ ଗୁଇଂର ମିଳିଯିବ; ଆଉ ସେହି ଲୋକମାନଙ୍କଠାରୁ ପ୍ରତିଶୋଧ ନେବି, ଯେଉଁମାନେ କି ମୋର ବେରୋଜଗାରିର ଫାଇଦା ଉଠେଇ ମୋର ନିନ୍ଦା କରିଛନ୍ତି । ଦେଖାଯାଉ ଓଟ କେଉଁ କଡ଼ମାଡ଼ ବସୁଛି ! ବସୁଛି କି ନାହିଁ କେଜାଣି, କାରଣ ମୋ ଭାଗ୍ୟରେ ଏ ଓଟ ଗତ ଦଶବର୍ଷ ହେଲା ଠିଆହୋଇ ରହିଛି ।



# ଡାଇରେକ୍ଟରଙ୍କ କୁକୁର

ସେ ଥିଲା ଡାଇରେକ୍ଟରଙ୍କ କୁକୁର । ଡାଇରେକ୍ଟରଙ୍କ ପରି ସେ ବି ଥିଲା ହିଂସ୍ର ଓ ବଦ୍‌ରାଗୀ । ଯେତେବେଳେ ତ ସେ ଡାଇରେକ୍ଟରଙ୍କ ସଙ୍ଗରେ ଚଳପ୍ରଚଳ ହେଉଥିଲା । ତାର ନାଆଁ କଅଣ ଥିଲା, ତାହା କେହି ଜାଣିନଥିଲେ । 'ଡାଇରେକ୍ଟରଙ୍କ କୁକୁର' ନାଆଁରେ ସେ ପରିଚିତ ଥିଲା । ଏକେ ତ କୁକୁର, ସେଥିରେ ପୁଣି ଡାଇରେକ୍ଟରଙ୍କ କୁକୁର ! ଏକେ ତ କଲରା ପିତା, ସେ ପୁଣି ମାଡ଼ିଛି ନିମ ଗଛରେ । ପତସ୍‌ବୋଖାରିଙ୍କ (ଜଣେ ଉର୍ଦ୍ଦୁ ହାସ୍ୟଲେଖକ) କହିବା ଅନୁଯାୟୀ ସେ ଥିଲା 'କୁକୁର ଭଳି କୁକୁରଟାଏ' । ଡାଇରେକ୍ଟର କାର୍‌ରେ ଅଫିସକୁ ଆସିଲାବେଳେ, ସେ ତାଙ୍କ ପଛ ସିଟ୍‌ରେ ବସି ଅଫିସର ମହିଳା କିରାଣୀମାନଙ୍କୁ ଦେଖି ନାଳ ଗଡ଼ଉଥାଏ । କାର ଡାଇରେକ୍ଟରଙ୍କୁ ଛାଡ଼ି କୁକୁରକୁ ଫେରାଇ ନେଉଥିଲା । ଡାଇରେକ୍ଟର କୁକୁରକୁ କାହିଁକି ଆଣୁଥିଲେ, ତାହା କେହି ବୁଝିପାରୁ ନଥିଲେ । କେତେଜଣ ଭାବୁଥିଲେ, ଡାଇରେକ୍ଟର ନିଜର ବ୍ୟକ୍ତିତ୍ୱରେ କୁକୁରକୁ ମିଳାଇ ନିଜର ଗୁରୁତ୍ୱ ବଢ଼ାଇବା ଚାହୁଁଥିଲେ । ସେକଥା ଭଗବାନଙ୍କୁ ଜଣା ।

କିନ୍ତୁ ମୋର ଏ ବିଷୟରେ ଭିନ୍ନ ମତ ଥିଲା । ମୋର କହିବା କଥା, କୁକୁରଠାରେ ପ୍ରକୃତରେ କିଛି ନାହିଁ । ଯଦି କୁକୁରର କୁକୁରତ୍ୱରୁ ଡାଇରେକ୍ଟରଙ୍କୁ ଅଲଗା କରିଦିଆଯାଏ, ତେବେ ସେ କୁକୁରର କେବଳ ଲାଞ୍ଜଟି ରହିଥିବ, ଯାହାକି ଆମମାନଙ୍କ ଭଳି ରାମାଦାମାଙ୍କ ଆଗରେ ହଲୁଥିବ । ଏହି କୁକୁରର ଲାଞ୍ଜ ଛଡ଼ା ଆଉ ଯାହାକିଛି ଅଛି; ତାହା ହେଉଛି 'ଡାଇରେକ୍ଟରଗିରି' । ଏହି କଥାକୁ ପ୍ରମାଣ କରିବା ପାଇଁ ମୁଁ ଡାଇରେକ୍ଟରଙ୍କର ବ୍ୟକ୍ତିଗତ ସହକାରୀଙ୍କ ବିଷୟରେ

କହେ କି, କେବେ କେବେ ସେ (ବ୍ୟକ୍ତିଗତ ସହକାରୀ) ସେହି କୁକୁରଠାରୁ ଯେ ବେଶି ହିଂସ୍ର ଦେଖାଯାଆନ୍ତି ତାହା ନୁହେଁ; ବରଂ ଭଲକରି ଦେଖିଲେ ତାଙ୍କର ମୁନିଆଁ ଦାନ୍ତ ଓ ଅନିଷ୍ଟକାରୀ ଚଞ୍ଚୁ ଛଡ଼ା ତାଙ୍କର ଲାଞ୍ଜ ମଧ୍ୟ ଦିଶିଯାଏ। ତାପରେ ମୋର ଯୁକ୍ତିକୁ ଅଧିକ ଦୃଢ଼ କରିବାପାଇଁ ମୁଁ ମୋ ନିଜ କୁକୁରର ପ୍ରମାଣ ଦେଉଥିଲି ଯେ, ସେ ଏପରି ଏକ ଆଲସିସିଆନ୍ କୁକୁର, ଯାହାର କୁଳୀନତା ସମ୍ପର୍କରେ ଟିକିଏ ବି ସନ୍ଦେହ କରାଯାଇ ନପାରେ, କିନ୍ତୁ ମୋ ପରି ଏକ ସାଧାରଣ କର୍ମଚାରୀର କୁକୁର ହୋଇଥିବାରୁ ବସ୍ତିର ଚ୍ଛୋଟ ଚ୍ଛୋଟ ପିଲମାନେ ସାରାଦିନ ଧରି ତା ଲାଞ୍ଜରେ ଝୁଲୁଥାନ୍ତି। କୁକୁର ପୋଷିବାରେ କେବଳ କୁକୁରର ବଂଶମର୍ଯ୍ୟାଦା ନୁହେଁ ବରଂ ଯେ କୁକୁର ପାଳୁଛି ତା'ର କୁଳୀନତା ସମ୍ପର୍କରେ ମଧ୍ୟ ଗବେଷଣା ହେବା ଉଚିତ। ଜଗତର କୌଣସି ଜିନିଷ ଅସଲ ନୁହେଁ। ମୋର ଏହି କୁକୁର ଯଦି ପିତୃମାତୃ ଉଭୟ କୁଳର ଗୌରବସମ୍ପନ୍ନ କୁକୁର ହୋଇଥା'ନ୍ତା, ତେବେ ତା'ର କେତେ ସମ୍ମାନ ଥା'ନ୍ତା ଦେଖନ୍ତେ। ମଣିଷର ବଡ଼ପଣ ଗୁଣ, ପରେ କୁକୁରମାନଙ୍କର ବଡ଼ପଣର କାରଣ ହୋଇଥାଏ।

ଡାଇରେକ୍ଟରଙ୍କ କୁକୁର ବିଷୟରେ କଥା ପଡ଼ିଥିଲା; ମୁଁ ଅନ୍ୟ କୁକୁର ବିଷୟରେ ଭୁକିବା ଆରମ୍ଭ କରିଦେଲିଣି। ଦିନେ ଏପରି ହେଲା ଯେ ଡାଇରେକ୍ଟର ନିଜ କାରରୁ ଓହ୍ଲାଇ ଅଫିସ ଭିତରକୁ ଚାଲିଗଲାବେଳେ, ଏ କୁକୁର କୌଣସି ପ୍ରକାରେ ବାହାରକୁ ଖସିଗଲା। ଡ୍ରାଇଭର ଯୋଗେଶ୍ ଫେରି ଦେଖିଲା, କୁକୁର ଉଭାନ୍। ଡାଇଭରର ଝାଳ ବୋହିଗଲା। କୁକୁର ହଜିଗଲେ ତା' ଚାକିରି ବି ଚାଲିଯିବ। ଦୈବାତ୍ ବର୍ମାଜୀ ସେ ସମୟରେ ଅଫିସ ଭିତରେ ପଶୁଥିଲେ। ସେ ପାଟିକରି କହିଲେ, "ଭାଇ, ଡାଇରେକ୍ଟର ସାହେବଙ୍କ କୁକୁର ଫିଟିଗଲା, ତାକୁ ଧରିବାକୁ ଚେଷ୍ଟାକର।"

ବର୍ମାଜୀ ପ୍ରୌଢ଼ ବୟସର ଜଣେ 'ମଣିଷ ଓ କିରାଣିମିଶା' ଜୀବଟିଏ ଥିଲେ। ଦଶବର୍ଷ ହେଲା ତାଙ୍କର ପଦୋନ୍ନତି ହୋଇନଥିଲା। ତାଙ୍କ ସି.ସି. ଆର୍.ରେ ଦୋଷ ଥିଲା। ସବୁ ଅଫିସରମାନେ ଲେଖିଥିଲେ ଯେ କିଛି କାମ କରିବା ଜାଣନ୍ତିନାହିଁ। ବହୁ ଚେଷ୍ଟା ଓ ସୁପାରିଶ ବଳରେ

ସେ ଏବେ ନିଜ ପଦୋନ୍ନତି ବିଷୟରେ ନିଜ ଫାଇଲଟିକୁ ଡାଇରେକ୍ଟରଙ୍କ ପାଖକୁ ପଠାଇଥିଲେ । ସେ ଫାଇଲ୍‌ଟି ତାଙ୍କ ଟେବୁଲ୍ ଉପରେ ବିଚାରାଧୀନ ଥିଲା । ଡାଇରେକ୍ଟରଙ୍କ କୁକୁର ହଜିଯିବା ଖବର ପାଇବାମାତ୍ରେ ତାଙ୍କ କାନ ଠିଆହୋଇଗଲା । ସେ ବିଚାରିଲେ ପଦୋନ୍ନତି ବିଷୟଟି ପକ୍‌କା କରିବା ପାଇଁ ଏହାଠାରୁ ଅଧିକ ସୁନ୍ଦର ସୁଯୋଗ ଆଉ ନାହିଁ । ଅଫିସରମାନେ ସେ କୌଣସି କାମ କରିବା ଜାଣିନଥିବା ବିଷୟରେ ହଜାରେ ଲେଖିଲେ ବି ଡାଇରେକ୍ଟରଙ୍କ କୁକୁରକୁ ଧରି ପ୍ରମାଣ କରିଦେବେ ଯେ ସେ ଗୋଟାଏ କାମ ତ କରିପାରିବେ । ସେ ଚିନ୍ତାକଲେ, ଏସବୁ ଦୈବଯୋଗରୁ ହେଉଛି—କାର୍ ଭିତରୁ କୁକୁର ପଳେଇବା, ପଦୋନ୍ନତି ଫାଇଲ୍ ଡାଇରେକ୍ଟରଙ୍କ ପାଖରେ ପହଞ୍ଚିବା, ଆଉ ଠିକ୍ ସମୟରେ ତାଙ୍କର ଅଫିସ ଭିତରେ ପଶିବା; ଏସବୁରୁ ପ୍ରମାଣ ମିଳୁଛି ଯେ ଭଗବାନ ତାଙ୍କ ପଦୋନ୍ନତିର ବିଚାର କରୁଛନ୍ତି ।

ଡାଇରେକ୍ଟରଙ୍କ ଡ୍ରାଇଭର ପୁଣିଥରେ ପାଟିକରି କହିଲା —"ଭାଇମାନେ, ଡାଇରେକ୍ଟର ସାହେବଙ୍କ କୁକୁର ପଳେଇଯାଇଛି । ତୁମେମାନେ ତାକୁ ଧରିବାକୁ ଚେଷ୍ଟାକର, ନହେଲେ ମୋ ଚାକିରି ଉପରକୁ ବିପଦ ଆସିଯିବ ।"

ବର୍ମାଜୀ ପାଟିକରି ଉତ୍ତର ଦେଲେ—"ଯୋଶେଫ୍ ! ତୁମେ ଏ ବିଷୟରେ ଏତେ ହଲ୍ଲା କରନାହିଁ । ମୁଁ ଏକୁଟିଆ ଏ କୁକୁରକୁ ଧରିନେବି । କେବଳ ତୁମ ଚାକିରି ନୁହେଁ, ମୋ ପଦୋନ୍ନତିର ପ୍ରଶ୍ନ ମଧ୍ୟ ଏଥିରେ ଅଛି ।" କିନ୍ତୁ ସେତେବେଳକୁ ଯୋଶେଫ୍‌ର ଚିତ୍କାର ନଟରାଜନଙ୍କ କାନରେ ପଡ଼ିଯାଇଥିଲା । ନଟରାଜନ ହେଉଛି ଅଫିସର ଆକାଉଣ୍ଟାଣ୍ଟ ଏବଂ ହିସାବରେ କିଛି ଗଣ୍ଡଗୋଳ ପାଇଁ ତା ସମ୍ବନ୍ଧରେ ଅନୁସନ୍ଧାନ ଚାଲିଥିଲା । ସେତେବେଳକୁ ତା ଫାଇଲ୍ ଡାଇରେକ୍ଟରଙ୍କ ଟେବୁଲ ଉପରେ ବିଚାରାଧୀନ ଥିଲା ।

ନଟରାଜନ ପାଟିକରି କହିଲା—"ଯୋଶେଫ୍ ! କିଛି ଚିନ୍ତାନାହିଁ । ମୁଁ ଏ କୁକୁରକୁ ଧରିବି । ଡାଇରେକ୍ଟରଙ୍କ କୁକୁର ଲାଗି ମୁଁ ମୋ

ଜୀବନ ଦେଇଦେବି । ସେଥିପାଇଁ ମୋର ଶେଷରକ୍ତବିନ୍ଦୁ ମଧ୍ୟ ଦେବି । ଯେଉଁଠି ଯେଉଁଠି ଏହାର ଝାଳ ବୋହି ତଳେ ପଡ଼ିଥିବ, ସେଇଠି ସେଇଠି ମୁଁ ମୋ ରକ୍ତ ବୁହାଇଦେବି ।” ସେ ନିଜ ଥଳି ତଳେ ଥୋଇଦେଇ କମ୍ପାଉଣ୍ଡ ଭିତରେ ଧାଇଁଲେ ।

ବର୍ମାଜୀ ପାଟିକରି କହିଲେ, “ନଟବରଜୀ ! ସ୍ୱଭାବରେ ଗଣ୍ଡଗୋଳ କଲେ ପଛେ କର, କିନ୍ତୁ କୁକୁର ଧରିବା ବିଷୟରେ ଗଣ୍ଡଗୋଳ କରନାହିଁ । ଯୋଶେଫ ମୋତେ ପ୍ରଥମେ କୁକୁର ଧରିବାକୁ କହିଥିଲା । ମଝିରେ ତୁମେ ଆସୁଛ କାହିଁକି ?”

ନଟବରଜୀ କହିଲେ—“ମୁଁ ଜାଣେ, ତୁମ ପଦନ୍ନୋତି ଫାଇଲ୍ ଡାଇରେକ୍‌ଟର୍‌ଙ୍କ ଟେବୁଲ ଉପରେ ଅଛି, କିନ୍ତୁ ଯୁଁ ବି ଜାଣିଥାଅ ଯେ ମୋ ବିଷୟରେ ଯେଉଁ ଅନୁସନ୍ଧାନ ଚାଲିଛି, ତାର ଫାଇଲ୍ ବି ଡାଇରେକ୍‌ଟରଙ୍କ ଟେବୁଲ ଉପରେ ଅଛି । କୁକୁରକୁ ଧରିବାର ଦାବି ତୁମର ଯେତିକି ଅଛି, ମୋର ମଧ୍ୟ ସେତିକି ଅଛି । ଆଉ ଏକା ତୁମେ କଅଣ କୁକୁର ଧରିବାର ଠିକା ନେଇଛ ?”

ଏହାପରେ ତିନିଜଣଯାକ କମ୍ପାଉଣ୍ଡ ଭିତରେ ଧାଇଁବାକୁ ଲାଗିଲେ । କୁକୁରର ଚଞ୍ଚଳତା ଓ ଅସ୍ୱସ୍ତିବୋଧରୁ ଜଣାଯାଉଥିଲା ଯେ ସେ ଗୋଟିଏ ଖୁମ୍ବ ଖୋଜୁଛି ।

ବର୍ମାଜୀ ଯୋଶେଫ୍‌କୁ କହିଲେ—“ମନେହେଉଛି ବିଚରା କୁକୁରଟି ପରିସ୍ରା କରିବାକୁ ଚାହୁଁଛି କିନ୍ତୁ ତାକୁ ଖୁମ୍ବଟାଏ ମିଳୁନି । ତୁମେ ଆଉ ନଟବରଜୀ ଏଇଠି ରୁହ । ମୁଁ ମୋ ଗୋଡ଼କୁ ଖୁମ୍ବଭଳି ତା ସାମନାରେ ରଖିଦେବି ।”

ନଟବରଜୀ କହିଲେ—“ନା, ଏହା ହୋଇପାରିବନି, ମୁଁ ତାକୁ ପରିସ୍ରା କରିବାକୁ ସୁବିଧା ନଦେଇ ଧରିବି ।”

ବର୍ମାଜୀ କହିଲେ, “ତୁମେ ତ କଂସେଇଠାରୁ ଅଧିକ ନିଷ୍ଠୁର ଜଣାଯାଉଛ । କଂସେଇ କୌଣସି ଜୀବକୁ ମାରିବା ପୂର୍ବରୁ ତାକୁ ପାଣି

ପିଆଇଦିଏ । ଯଦି ତୁମେ ତାକୁ ପରିସ୍ରା କରିବାକୁ ସୁବିଧା ନଦିଅ, ମୁଁ ଡାଇରେକ୍ଟରଙ୍କ ସାହେବଙ୍କ ପାଖରେ ଅଭିଯୋଗ କରିବି ।” ଏହା କହି ବର୍ମାଜୀ କୁକୁର ଆଗରେ ଗୋଡ଼ ରଖିବାକୁ ଗଲେ । ନଟରାଜନ୍ ପଛଆଡ଼ୁ ତାଙ୍କ ଅଣ୍ଟାକୁ ଧରିପକେଇ, ନିଜ ଆଡ଼କୁ ଟାଣିବାକୁ ଲାଗିଲେ । କୁକୁର ଏମାନଙ୍କ କାର୍ଯ୍ୟ ଦେଖି ହୁସିଆର ହୋଇ ପଳେଇଗଲା । ତିନିଜଣଯାକ କୁକୁର ପଛରେ ଧାଇଁଲେ । ଏ ଦଉଡ଼ରେ ଏପରି ଏକ ସ୍ଥାନ ଆସିଗଲା, ଯେଉଁଠାରେ କି ନଟରାଜନ ସହଜରେ କୁକୁରକୁ ଧରି-ପକେଇଥାଆନ୍ତେ । ତାଙ୍କ ହାତ କୁକୁର ବେକ ପଟିରେ ପଡ଼ୁଛି କି ନାହିଁ, ଏହି ସମୟରେ ବର୍ମାଜୀ ତାଙ୍କ ଗୋଡ଼ ହ'ଟାକୁ ନିଜ ଗୋଡ଼ରେ ଏପରିଭାବରେ ଛନ୍ଦିଦେଲେ ଯେ, ନଟରାଜନ ଦୁମ୍‌କରି ମୁହଁମାଡ଼ି ପଡ଼ିଗଲେ ।

ବର୍ମାଜୀ ଯୁବାବସ୍ଥାରେ ଏକ ଭଲ ଫୁଟ୍‌ବଲ୍ ଖେଳାଳି ଥିଲେ । ପିଲାଦିନର ଅଭିଜ୍ଞତା ସବୁ କେବେହେଲେ ବେକାର ହୋଇଯାଏ ନାହିଁ । ନଟରାଜନଙ୍କ ମୁହଁରୁ ଅଳ୍ପନିକ ରକ୍ତ ବାହାରିବାକୁ ଲାଗିଲା । ସେ ପାଟିକରି କହିଲେ—“ବର୍ମାଜୀ, ଆପଣ କୁକୁରକୁ ଧରୁଛନ୍ତି ନା ଫୁଟ୍‌ବଲ ଖେଳୁଛନ୍ତି ? ଫୁଟ୍‌ବଲ ଖେଳିବାବେଳେ ପଛେ ଆପଣ ଫାଉଲ କରିପାରନ୍ତି, କିନ୍ତୁ କୁକୁର ଧରିବା କାମବେଳେ ଫାଉଲ୍ ବିଲ୍‌କୁଲ୍ ଚଳିବ ନାହିଁ ।”

ନଟରାଜନ୍ ମୁହଁରୁ ରକ୍ତ ବାହାରୁଥିବା ଦେଖି ବର୍ମାଜୀ କହିଲେ—“ନଟରାଜନ୍ ! ତୁମେ ତ କହୁଥିଲ କୁକୁରକୁ ଧରିବାପାଇଁ ଶେଷରକ୍ତବିନ୍ଦୁ ବୁହାଇଦେବ, କିନ୍ତୁ ଦେଖାଯାଉଛି ତୁମେ; ପ୍ରଥମ ରକ୍ତବିନ୍ଦୁରୁ ଘାବରେଇ ଗଲଣି ।”

ନଟରାଜନ୍ କହିଲେ, “ବର୍ମାଜୀ ! ମୁଁ ଏତେ ଶୀଘ୍ର ସାହସ ହରେଇଲାବାଲା ନୁହେଁ । ମୋ ପୂର୍ବପୁରୁଷମାନେ ଶ୍ରୀରଙ୍ଗପଟନମ୍ ଲଢ଼େଇରେ ଇଂରେଜ ବିରୁଦ୍ଧରେ ନିଜ ଜୀବନ ପଣ କରିଦେଇଥିଲେ । ମୋ ଧମନୀରେ ସେହି ଶୁଦ୍ଧରକ୍ତ ବୋହୁଛି । ମୁଁ ଏ କୁକୁରକୁ ଧରିବି । ତା'ପରେ ଯାଇ ଦମ୍ ନେବି ।”

ଏଇ ସମୟ ମଧ୍ୟରେ ସାରା ଅଫିସରେ ଏ ସମ୍ବାଦ ନିଆଁ ଲାଗିଲାଭଳି ଠ ବ୍ୟାପିଗଲା ଯେ, ଡାଇରେକ୍ଟରଙ୍କ କୁକୁର ଖସି ପଳେଇଛି । ସବୁ କର୍ମଚାରୀ ଓ କିରାଣି ନିଜ ନିଜ କୋଠରୀରୁ ବାହାରି ଆସିଲେ ଏବଂ ନିଜ ନିଜର ଦୁର୍ବଳତା ଅନୁଯାୟୀ ଏହାକୁ ଧରିବାକୁ ଧାଇଁବାରେ ଲାଗିଲେ । କିନ୍ତୁ ଏ ଅଭିଯାନରେ ବର୍ମାଜୀ ସବୁଠାରୁ ଆଗରେ ଥିଲେ । ଜଣାପଡ଼ୁଥିଲା ପଦୋନ୍ନତିର ଏ ସୁଯୋଗକୁ ସେ ଜମା ହାତଛଡ଼ା କରିବେନି । ସେ ଏକ ଲମ୍ବା ଲମ୍ଫପ୍ରଦାନ କରି ଏହାକୁ ଧରିବାକୁ ଚେଷ୍ଟାକଲେ । କିନ୍ତୁ କୁକୁର ଖୁବ୍ ଚତୁର ଥିଲା । ସେ ହଠାତ୍ ତାଙ୍କ ପ୍ୟାଣ୍ଟର ଡାହାଣପଟ ମହୁରୀକୁ ନିଜ ଦାନ୍ତରେ ଧରିପକେଇଲା । କୁକୁରଟା ଥିଲା ଖୁବ୍ ପ୍ରଚଣ୍ଡ । ସେ ଗୋଟାଏ ଝିଙ୍କାରେ ବର୍ମାଜୀଙ୍କ ପ୍ୟାଣ୍ଟ୍‌ର ମହୁରୀର ସମ୍ପର୍କକୁ ପ୍ୟାଣ୍ଟ୍‌ର ଅନ୍ୟ ଅଂଶଠାରୁ ବିଚ୍ଛିନ୍ନ କରିନେଲା । କିନ୍ତୁ ବର୍ମାଜୀ ତେବେ ବି ନିରାଶ ବା ଲଜ୍ଜିତ ହେଲେନାହିଁ । ସେ କହିଲେ, "ଆଚ୍ଛା, ଏ କୁକୁରର ହୁସିଆରି ଦେଖ, କେତେ ବୁଦ୍ଧିମାନ ଇଏ । ସେ ମୋର ପ୍ୟାଣ୍ଟ୍‌ର ସେହି ମହୁରୀ ଟାଣିଛି, ଯେଉଁଥିରେ ସ୍କୁରିପାଞ୍ଚଟା ତାଳି ପଡ଼ିସାରିଛି । ଆହା କେଡ଼େ ଚତୁର ଏ କୁକୁର ! ମୁଁ ତା ଚତୁରତା ଆଗରେ ନିଜକୁ ସମର୍ପି ଦେବି ।" ଆଉ ବାସ୍ତବରେ ବର୍ମାଜୀ ନିଜ ମୁଣ୍ଡ ଦୁଇପଟେ ହାତ ଆଙ୍ଗୁଠି ଫୁଟାଇ କୁକୁର ପ୍ରତି ନିଜ ସ୍ନେହ ପ୍ରକାଶ କଲେ ।

କୁକୁରର ମନରେ କଅଣ ଆସିଲା କେଜାଣି, ସେ ହଠାତ୍ କମ୍ପାଉଣ୍ଡରୁ ବାହାରିଯାଇ ରିସେପ୍‌ସନିଷ୍ଟ ରୁମ୍‌ରେ ପଶିଗଲା । ଦପ୍ତରର ରିସେପ୍‌ସନିଷ୍ଟ ଗୋଟିଏ ସୁନ୍ଦରୀ ତରୁଣୀ । ସେ ସାରାଦିନ ନିଜର ଚେହେରା ସଜାଡ଼ିବାରେ ଲାଗିଥାଏ । କେହି ଲୋକ ତା କାଉଣ୍ଟର ପାଖକୁ ଆସିଗଲେ, ସେ ଗୋଟିଏ ଟୁଥ୍‌ପେଷ୍ଟ କମ୍ପାନୀର ଜୀଅନ୍ତା ବିଜ୍ଞାପନ ବନିଯାଉଥିଲା । ସେ ଯେବେ ହସି କାହାକୁ ସ୍ୱାଗତ କରୁଥିଲା, ତେବେ ଲୋକେ ସେମାନଙ୍କ ଆସିବାର କାରଣ ଭୁଲିଯାଉଥିଲେ । ଦପ୍ତର ଓ ଆଗନ୍ତୁକଙ୍କ ମଝିରେ ରିସେପ୍‌ସନିଷ୍ଟର ହସ କାନ୍ଥପରି ଠିଆ ହୋଇଥିଲା । ବହୁତ କେସ୍ ସେ କେବଳ ତା ସ୍ମିତହାସ୍ୟରେ ମିଟେଇ ଦେଉଥିଲା । ଦପ୍ତରର ପ୍ରବେଶ ଦ୍ୱାରରେ ତା'ର ହସ ଗୋଲ୍‌କୁଣ୍ଡା କିଲ୍ଲା ଦ୍ୱାରଦେଶରେ ଅବଦୁଲ ରଜାଙ୍କର ଲପିପରି ଥିଲା । ସେ ହସକୁ

ଅତିକ୍ରମ କରିବା ଏକ ଦୁଃସାଧ କାର୍ଯ୍ୟ ଥିଲା । କୁକୁର ଚା କାଉଣ୍ଟରରେ ପହଞ୍ଚିଲାବେଳେ ସେ ପ୍ରବେଶପତ୍ର ନଜର ଭ୍ରୂଲତାକୁ ଆହୁରି କଳା କରିବା ପରେ, ଲିପ୍‌ଷ୍ଟିକ୍ ସାହାଯ୍ୟରେ ଓଠକୁ ଆହୁରି ଲାଲ୍ କରିବାରେ ବ୍ୟସ୍ତ ଥିଲା । କୁକୁରକୁ ଦେଖିବାମାତ୍ରେ ତାର ଐତିହାସିକ ହସ ହଠାତ୍ ଉଭାନ ହୋଇଗଲା ଏବଂ ଆଖି ଧୀରେ ଧୀରେ ପଦାକୁ ବାହାରିବାକୁ ଲାଗିଲା । ସେ ଡରିଯାଇ କାଉଣ୍ଟର ଉପରକୁ ଚଢ଼ିଗଲା । କୁକୁର ପଛେ ପଛେ ଦପ୍ତରର ଅନ୍ୟାନ୍ୟ ଲୋକ କାଉଣ୍ଟରରେ ଆସି ପହଞ୍ଚିଗଲେ । ରିସେପ୍‌ସନିଷ୍ଟର ବ୍ୟସ୍ତତା ଦେଖି ସେକ୍‌ସନ୍ ଅଫିସର ଜମାଲୁଦ୍ଦିନ କହିଲା, "ମାଡାମ୍, ବ୍ୟସ୍ତ ହେବାର କିଛିନାହିଁ । ଇଏ ହଉଚି ଡାଇରେକ୍ଟର ସାହେବଙ୍କ କୁକୁର । ତୁମେ ତୁମର ହସ ଏମିତି ଆରମ୍ଭ କର, ଯେମିତି କି କୁକୁରଟା ବି ମୁଗ୍ଧ ହୋଇଯିବ; ଆଉ ଆମେ ତାକୁ ସହଜରେ ଧରିନେଇ ପାରିବା ।"

କିନ୍ତୁ ଆଶୁକବିଙ୍କ ଭଳି ଯୋଉ ହସ ସର୍ବଦା ତା ମୁହଁରେ ଫୁଟିଉଠୁଥିଲା, ତାହା କୁଆଡ଼େ ଉଡ଼ିଯାଇଗଲା ।

କିନ୍ତୁ କୁକୁରର ନାୟାପ୍ରତି କିଛି 'ଦୁର୍ବଳତା' ଥିଲା ବୋଧହୁଏ କିମ୍ବା ସେଇଟା ଆନ୍ତର୍ଜାତିକ ନାରୀବର୍ଷ ପାଳନ କରାଯାଉଥିବା କଥା ଭାବି ସେ ସେଠୁ ପଳେଇଗଲା, ଆଉ ଝରକା ଉପରବାଟେ ଡେଇଁ ପତ୍ରାବଳୀ ବିଭାଗ କୋଠରିରେ ପଶିଗଲା । ସେକସନ୍ ଅଫିସର କୁଳକର୍ଣ୍ଣିବାବୁଙ୍କୁ କୁକୁର ପଳେଇଯିବା ଖବର ଅବଶ୍ୟ ମିଳିଯାଇଥିଲା, କିନ୍ତୁ ଏହାକୁ ଧରିବାରେ ସକ୍ରିୟ ଭାଗନେବା ତାଙ୍କ ପକ୍ଷରେ ସମ୍ଭବ ନଥିଲା, କାରଣ ଠିକ୍ ବାରଟାବେଳେ ତାଙ୍କର ଏକ ଜରୁରୀ ଫାଇଲ ଡାଇରେକ୍ଟରଙ୍କ ପାଖରେ ଦାଖଲ କରିବାର ଥିଲା, ଆଉ ବାରଟା ବାଜିବାକୁ ମାତ୍ର ଅଧଘଣ୍ଟାଏ ବାକି । କୁକୁର କୁଳକର୍ଣ୍ଣିଙ୍କ କୋଠରିକୁ ଆସିବାମାତ୍ରେ ସେ ସସମ୍ମାନେ ଠିଆହୋଇ ପଡ଼ିଲେ । ପ୍ରଥମେ ତ କୁକୁର ଟେବୁଲ ଉପରକୁ କୁଦିପଡ଼ିଲା, ଆଉ ଟେବୁଲ ଉପରେ ପଡ଼ିଥିବା ସେଇ ଫାଇଲ୍‌ଟିକୁ ନିଜ ଦାନ୍ତରେ ଉଠେଇଲା, ଯେଉଁଥିରେ 'ବିଶେଷ ଜରୁରୀ' (Top priority) ଲେଖାଥିବା ଦେଖାଯାଉଥିଲା । କୋଠରି ଭିତରେ ଓ ବାହାରେ ଜମାଥିବା ଲୋକେ କୁକୁରର ଏ କାମ ଦେଖି

ଆଶ୍ଚର୍ଯ୍ୟ ହୋଇଗଲେ । ଲୋକେ କହିଲେ, "ଦେଖ କେମିତି ଚତୁର ଏ ଏ କୁକୁର । ଅଫିସ୍‌ର କାଇଦା କଟକଣା ତାକୁ କେତେ ଜଣା । ଏଇଥିପାଇଁ ଯେଉଁଥିରେ 'ବିଶେଷ ଜରୁରୀ' ଲେଖାହୋଇଛି; ସେଇ ଫାଇଲକୁ ସେ ଉଠେଇଲା ।" କୁଳକର୍ଣ୍ଣି ଚିତ୍କାର କରି କହିଲେ, "ଆରେ ଇଏ କଅଣ ? ମୋର ତ ସେ ଫାଇଲ୍‌କୁ ଠିକ୍ ବାରଟା ବେଳେ ଡାଇରେକ୍ଟରଙ୍କ ପାଖରେ ଦାଖଲ କରିବାର ଅଛି । କୁକୁରକୁ ଧର କି ନଧର, ଏ ଫାଇଲ୍‌କୁ କୌଣସି ପ୍ରକାରେ ତା ମୁହଁରୁ ଛଡ଼ାଅ ତ ।" କୁକୁର ଏଥରକ ପୁଣି ତା ବୁଦ୍ଧିମତ୍ତାର ପରିଚୟ ଦେଲା । ଡାଇରେକ୍ଟରଙ୍କ ନାଆଁ ଶୁଣିବାମାତ୍ରେ ସେ ସେହି ଫାଇଲ୍‌କୁ ଛାଡ଼ି ଦେଲା; ଆଉ ସିନିଅର କିରାଣି ସୁବାସ ବଗାଇଙ୍କ ଜଳଖିଆ ଡବା ନେଇ ପଳାଇଲା । ସୁବାସ ବଗାଇଙ୍କ ହଂସା ଉଡ଼ିଗଲା । ସେ ଚିତ୍କାର କରି କହିଲେ—"ଭାଇମାନେ, ସେ ଜଳଖିଆ ବାକ୍ସଟି ତା ମୁହଁରୁ ଛଡ଼ାଅ । ଇଏ ମୋର ମାନ ସମ୍ମାନର କଥା । କୁକୁର ଯଦି ଜଳଖିଆ ବାକ୍ସକୁ ଖୋଲି ଦିଏ, ତେବେ ମୁଁ କାହାରିକୁ ମୁହଁ ଦେଖାଇ ପାରିବିନି । ଆଜି ପର୍ଯ୍ୟନ୍ତ ଅଫିସରେ କେହି ଜାଣିନାହାନ୍ତି ଯେ ମୁଁ ବିନା ତରକାରିରେ ମାତ୍ର ଖଣ୍ଡିଏ ରୁଟି ଜଳଖିଆ ବାକ୍ସରେ ଆଣୁଛି । ପୁଣି ସେ ରୁଟି ଖଣ୍ଡିକ ବି ଡାଇରେକ୍ଟର ସାହେବଙ୍କ ଖାଇବା ଅଯୋଗ୍ୟ ।"

ଏହି ସମୟରେ କୁକୁର ପଳେଇଯାଇ ମହାଫିସ୍‌ଖାନାରେ ପହଞ୍ଚିଗଲା । ମହାଫିସ୍‌ଖାନାର ଇନ୍‌ଚାର୍ଜ ରହେମତ୍ ଅଲ୍ଲୀ ସାହେବ ଶୋଇ ରହିବାରେ ବ୍ୟସ୍ତ । ସେତେବେଳେ ବି ସେ ଶୋଇବାରେ ବ୍ୟସ୍ତ ଥିଲେ । ଲୋକେ ପାଟିକରି କହିଲେ—"ଭାଇ ଡାଇରେକ୍ଟର ସାହେବଙ୍କ କୁକୁର ତୁମ ମହାଫିସ୍‌ଖାନାରେ ପଶିଲାଣି । ଅନ୍ତତଃ ଏବେ ହେଲେ ଉଠିପଡ଼ ।"

ରହେମତ୍ ଅଲ୍ଲୀ ଗୋଟାଏ ହାଇମାରି କହିଲା—"କୁକୁର ମହାଫିସ୍‌ଖାନାକୁ ଆସିଲା ତ ତୁମେ ସବୁ ଏତେ ବ୍ୟସ୍ତ କାହିଁକି ? ସେ ଏଠାରେ ନିରାପଦରେ ରହିବ । ଆଜି ପର୍ଯ୍ୟନ୍ତ ମହାଫିସ୍‌ଖାନାରୁ କିଛି ଜିନିଷ ହଜିଲାଣି ନା ?"

ବର୍ମାଜୀ କହିଲେ—"ଭାଇ ! ସେ କୁକୁରକୁ ଧରିବାରେ ମୋତେ ଟିକିଏ ଭଲ ସାହାଯ୍ୟ କର ।"

ରହେମତ୍ ଅଲ୍ଲୀ କହିଲା, "ବହୁତ ଡେରି ହୋଇଗଲା । ମୁଁ ଡାଇରେକ୍ଟରଙ୍କ କୁକୁରକୁ ଜମା ଧରିବ ନାହିଁ, କାରଣ ମୁଁ ତ କାଲି ଅବସର ନେଉଛି । ମୋ ଭାଗ୍ୟ ସେ କୁକୁରଠାରୁ ବହୁତ ଦୂରକୁ ଚାଲିଗଲାଣି ।"

ବର୍ମା ନିଜ ପ୍ରମୋଶନ ପାଇଁ ଶେଷ ଚେଷ୍ଟା କରିବାକୁ ଚାହିଁଲେ କିନ୍ତୁ ନଟବରଜନ୍ ପୁଣି ତାଙ୍କୁ ପଛରୁ ଟାଣିନେଲେ ।

ଅଫିସରେ ହୋହୋ ଶୁଣି, ଡାଇରେକ୍ଟର ବାହାରକୁ ଚାଲିଆସିଲେ । ସେ ଦେଖିଲେ, ପୂରା ଅଫିସଟା ତାଙ୍କ କୁକୁରକୁ ଧରିବା ଚେଷ୍ଟାରେ ଲାଗିଯାଇଛି । ସେ ନିଜେ କୁକୁରକୁ ସ୍ନେହରେ ଡାକିଲେ । କୁକୁର ଡାଇରେକ୍ଟରଙ୍କୁ ଦେଖିଲାମାତ୍ରେ, ଲାଞ୍ଜହଲାଇ ତାଙ୍କ ପାଦତଳେ ଲୋଟିଗଲା । ଡାଇରେକ୍ଟର ଅବଲୀଳାକ୍ରମେ କୁକୁରଟିକୁ ଧରି ଗାଡ଼ିରେ ବସେଇଦେଲେ । ମୁଁ ଦେଖିଲି ସେତେବେଳେ ଅଫିସ୍‌ର ସବୁ କର୍ମଚାରୀଙ୍କ ଲାଞ୍ଜ ହଲୁଥିଲା । ଡାଇରେକ୍ଟର ଚୁପ୍‌ଚାପ୍ ନିଜ କୋଠରିକୁ ଫେରିଆସିଲେ ।

ବର୍ମା ନିଜ ଚିରିଯାଇଥିବା ପ୍ୟାଣ୍ଟକୁ ସମ୍ଭାଳି ଯେତେବେଳେ ନିଜ ସିଟ୍‌ରେ ପହଞ୍ଚିଲେ, ଜଣେ ସହକର୍ମୀ ତାଙ୍କୁ କହିଲେ ଯେ, "ତାଙ୍କ ପଦୋନ୍ନତି ସମ୍ପର୍କରେ ଯେଉଁ ଫାଇଲ୍ ଡାଇରେକ୍ଟରଙ୍କ ଟେବୁଲ ଉପରେ ବିଚାରାଧୀନ ଥିଲା, ତାହା ଫେରିଆସିଛି ।"

ସେ ପଚାରିଲେ, "କଅଣ ନିଷ୍ପତ୍ତି ହେଲା ?"

ସହକର୍ମୀ ଜଣକ କହିଲେ, "ବର୍ତ୍ତମାନ ତୁମକୁ ସେଇ ପୁରୁଣା ଦରମାରେ ନୂଆ ପ୍ୟାଣ୍ଟ ତିଆରି କରିବାକୁ ପଡ଼ିବ ।"

ସେଠି ନଟରାଜନ୍ ନିଜ ଟେବୁଲ ପାଖରେ ପହଞ୍ଚିବାରୁ, ତାଙ୍କୁ ଜଣେଇ ଦିଆଗଲା ଯେ, ତାଙ୍କ ବିରୁଦ୍ଧରେ ଯେଉଁ ଅଭିଯୋଗ ଥିଲା, ତାହା ପ୍ରମାଣିତ ହୋଇଯାଇଛି । ନଟରାଜନ୍‌କୁ ଲାଗିଲା ଯେପରି ଶ୍ରୀରଙ୍ଗପଟନମ ଯୁଦ୍ଧରେ ତାଙ୍କର ରକ୍ତବିନ୍ଦୁଟି ବୋହିଯିବ ।

ଦି'ପହରବେଳେ ଯେତେବେଳେ କ୍ୟାଣ୍ଟିନ୍‌ରେ ବର୍ମାଜୀ ଓ ନଟରାଜନ୍‌ଙ୍କ ଭେଟ ହେଲା, ସେତେବେଳେ ସେମାନେ ପରସ୍ପରକୁ କୁଣ୍ଢେଇ ପକେଇଲେ, କାରଣ ତାଙ୍କ ମଝିରେ ଆଉ ଡାଇରେକ୍ଟରଙ୍କ କୁକୁର ନଥିଲା ।



# ହୋଟେଲ ଶବାନା

(ଏ ଲେଖାର ସମସ୍ତ ଚରିତ୍ର, ସ୍ଥାନ ଏବଂ ଘଟଣାବଳୀ ସତ୍ୟ ଅଟେ ।
କେବଳ ନାଆଁ ଟି କାଳ୍ପନିକ )

ମିର୍ଜା, ଯାହାଙ୍କ ସାଙ୍ଗରେ ପ୍ରତ୍ୟେକ ଦିନ ଦେଖାହେଉଥିଲି । ତାଙ୍କୁ ହୋଟେଲ ଶବାନା ବନ୍ଦ ହୋଇଯିବାର ପୂର୍ବ ଅଣଗ୍ରୂଳଣ ଦିନ ପରେ ପଅରିଦିନ ଆବିଦ୍ ରୋଡ଼ରେ ଭେଟିଲି । ମିର୍ଜାଙ୍କୁ ଦେଖି ମୁଁ ଅନୁଭବ କଲି, ଯେପରି କି ମିର୍ଜାଙ୍କୁ ନୁହେଁ, ମିର୍ଜାଙ୍କ ଏକ୍ସ-ରେ (X-Ray)କୁ ଦେଖୁଛି ।

ମୁଁ ପଚ୍ଛରିଲି, "ମିର୍ଜା ! ଏ ତୁମର କଅଣ ହୋଇଯାଇଛି ? ତୁମେ ତ ବେଶ୍ ଏକ୍ସ-ରେ ରିପୋର୍ଟ ବନିଯାଇଛ ?"

କୋହଭରା କଣ୍ଠରେ ସେ କହିଲେ—"ବନ୍ଧୁ, ଯେଉଁଦିନଠାରୁ ହୋଟେଲ ଶବାନା ବନ୍ଦ ହୋଇଗଲାଣି, ସେହିଦିନଠାରୁ ମୋତେ ଯେମିତି ଲାଗୁଛି ଦୁନିଆର ସବୁ ଦ୍ୱାର ମୋ ପାଇଁ ବନ୍ଦ ହୋଇଯାଇଛି । ବିଶ୍ୱାସ କର, ସେହି ହୋଟେଲ ବନ୍ଦ ହୋଇଯିବା ପରେ ଘରେ ଆଉ ମନଲାଗୁନି ।"

ମୁଁ କହିଲି—"ମିର୍ଜା ! କଥାଟାକୁ ଜଟିଳ କରୁଛ କାହିଁକି ? ଯେବଠୁଁ ସେ ହୋଟେଲ ଖୋଲିଥିଲା, ସେତେବେଳେ ବି ତୁମ ମନ ଘରେ ଲାଗୁନଥିଲା । ସାରାଦିନଟା ହୋଟେଲ ଶବାନାରେ ବସୁଥିଲ । ଘରେ ମନ ନ ଲାଗିବାଟା ତ ତୁମର ଭାଗ୍ୟ; ଏଥିରେ ହୋଟେଲ ଶବାନା ବନ୍ଦ ହବା ନହବାର ପ୍ରଶ୍ନ କାହିଁ ?"

ମିର୍ଜା କହିଲେ—"ଏପରି କଥା କୁହନାହିଁ । ତୁମେ ମଧ୍ୟ କୋଡ଼ିଏ ବର୍ଷଯାଏ ହୋଟେଲ ଶବାନାର ସ୍ଥାୟୀ ଗ୍ରାହକ ହୋଇ ରହିଯାଇଛ । ଏ ହୋଟେଲକୁ ବନ୍ଦ କରିବାରେ ତୁମର ବି ସମାନ ଅବଦାନ ରହିଛି । ଏବେ ଯେତେବେଳେ ହୋଟେଲ ଶବାନା ଶହୀଦ୍ ହୋଇଗଲାଣି, ତାର ନାଆଁଟାକୁ ସମ୍ମାନର ସହ ଉଚ୍ଚାରଣ କର; ତାହାହେଲେ ତା ଆତ୍ମାକୁ କିଛିହେଲେ ଆରାମ ମିଳିବ ।"

ମୁଁ କହିଲି—"ମିର୍ଜା ! ହୋଟେଲ ଶବାନାର ଆତ୍ମା କଥା ଆଜି ତୁମର ମନେପଡ଼ୁଛି । ଯେତେବେଳେ ଏ ହୋଟେଲଟି ଜୀବିତ ଥିଲା, ତୁମେ ସବୁ ପ୍ରକାରରେ ତା ଆତ୍ମାକୁ ଦୁଃଖ ଦେଉଥିଲ ବରଂ ତା ଆତ୍ମା ଉପରେ ଘୋଡ଼ସବାର ପରି ସବାର ହୋଇରହି ଥିଲ ।"

ମିର୍ଜା କହିଲେ—"ତୁମେ ଯାହାକହୁଛ ସବୁ ମୁଁ ମାନୁଛି, ମୁଁ କୋଡ଼ିଏ ବର୍ଷଯାକ ସେ ହୋଟେଲ ସାଙ୍ଗରେ କିଛି ସଦ୍‌ବ୍ୟବହାର କରିନି । କିନ୍ତୁ ତା'ର କାନ୍ଥ ଓ ଦୁଆର ଉପରେ ମୋର ଗୋଟାଏ ମାୟା ଜମିଯାଇଥିଲା ।"

ମୁଁ ତାଙ୍କ କଥା କାଟି କହିଲି—"ଏମିତି ବି କହିବାକୁ ଗଲେ, ଶେଷଆଡ଼କୁ ସେ ହୋଟେଲରେ କାନ୍ଥ କବାଟ ଛଡ଼ା ଆଉ କଅଣ ରହିଥିଲା ? ହଁ, ସେଗୁଡ଼ାକ ଛୁଡ଼ିଦେଲେ କିଛି ଫର୍ନିଚର ରହିଯାଇଥିଲା । ଆଉ ଅନେକ ଲୋକ ସେ ହୋଟେଲକୁ ଫର୍ନିଚର ଦୋକାନ ବୋଲି ବିଚାରୁଥିଲେ ।" ମୋ କଥା ଶୁଣୁଶୁଣୁ ମିର୍ଜା ହୋଟେଲ ଶବାନାର ଚିନ୍ତାରେ ବୁଡ଼ିଗଲେ ।

ମୁଁ କହିଲି—"ମିର୍ଜା ! ଚାଲ କୌଣସି ହୋଟେଲରେ ବସି ହୋଟେଲ ଶବାନା କଥା ଚିନ୍ତା କରିବା ।"

ସେ କହିଲେ—"ଭଗବାନଙ୍କ ରାଣ ଯେବେଠୁଁ ହୋଟେଲ ଶବାନା ବନ୍ଦ ହେଲା, ସେହିଦିନଠୁଁ ମୁଁ କୌଣସି ହୋଟେଲରେ ପଶିନାହିଁ; ଆଉ ପଶିବାକୁ ମଧ୍ୟ ଇଚ୍ଛା ନାହିଁ । ଶେଷରେ କୃତଜ୍ଞତା ବୋଲି ତ ଗୋଟାଏ ଜିନିଷ ଅଛି ।"

ମୁଁ କହିଲି—ମିର୍ଜା ! ବିଶ୍ୱାସ କର, ତୁମେ ହୋଟେଲ ଶବାନା ପ୍ରତି ଅକୃତଜ୍ଞ ହେବାକୁ ଚାହିଁଲେ ମଧ୍ୟ ଅନ୍ୟାନ୍ୟ ହୋଟେଲର ମାଲିକମାନେ ତୁମକୁ ଅକୃତଜ୍ଞ ହେବାକୁ ଦେବେ ନାହିଁ । ପଞ୍ଚଶବ୍ଦନ କଥା । ହୋଟେଲ ଶବାନାରୁ ଭାଙ୍ଗିଯାଇଥିବା ଦଳେ ଗ୍ରାହକ ଅନିଶ୍ଚିତତା ହେତୁ ବିରକ୍ତ ହୋଇ ଗୋଟିଏ ହୋଟେଲରେ ପ୍ରବେଶ କଲେ । ସେମାନଙ୍କୁ ଦେଖିବା ମାତ୍ରେ ହୋଟେଲ ମାଲିକ ହାତଯୋଡ଼ି କହିଲା—"ଆପଣମାନେ ମୋ ବାପ-ମାଆ । ଆପଣମାନଙ୍କ ଗୋଡ଼ତଳେ ପଡ଼ୁଛି; ମୋ ହୋଟେଲକୁ ଆପଣମାନଙ୍କ ପୃଷ୍ଠପୋଷକତାରୁ ଦୂରେଇ ରଖିଲେ ଭଲ ହେବ । ବରଂ ଆପଣମାନେ ଯଦି ମୋ କଥା ମାନି କରି ହୋଟେଲରେ ନିତି ବସାଉଠା କରିବାର ବନ୍ଦୋବସ୍ତ କରି ନିଅନ୍ତି, ତେବେ ଆପଣମାନଙ୍କର ହୋଟେଲିଂ ଖର୍ଚ୍ଚ ମୁଁ ନିଜ ହୋଟେଲରୁ ଦେବାକୁ ତିଆରି ଅଛି ।"

ମିର୍ଜା କହିଲେ—"ଭାଇ ! ପ୍ରକୃତ କଥାଟି ହେଉଛି ଏଇଆ ଯେ, ହୋଟେଲ ଶବାନାର ଗ୍ରାହକମାନଙ୍କର ହୋଟେଲିଂ ସହ ସମ୍ବନ୍ଧ କଅଣ ? ଭଗବାନଙ୍କ ରାଣ, ମୁଁ କୋଡ଼ିଏ ବର୍ଷଯାଏ ହୋଟେଲ ଶବାନାରେ ବସି ଆସିଥିଲି କିନ୍ତୁ ନିଜ ଉପରେ ହୋଟେଲିଂର ଆରୋପ ହେବାକୁ ଦେଇ ନଥିଲି । ହୋଟେଲ୍ ଶବାନା ତ ହୋଟେଲ ନଥିଲା; ସେ ଗୋଟିଏ ଦପ୍ତର ଥିଲା, ଗୋଟିଏ ସଂସ୍କୃତି ଥିଲା, ଗୋଟିଏ ଇତିହାସ ଥିଲା । ଏକ ଭୂଗୋଳ ଥିଲା, ଗୋଟିଏ କେମେଷ୍ଟ୍ରି ଥିଲା । ଏକ ତତ୍ତ୍ୱଜ୍ଞାନ ଥିଲା, ଏକ—"

ମୁଁ ଅନୁଭବ କଲି, ମିର୍ଜା ହୋଟେଲ ଶବାନାକୁ ସ୍ମରଣ କରି କରି ଭାବପ୍ରବଣ ହୋଇ ଉଠୁଛନ୍ତି । ତେଣୁ ମୁଁ ମଧ୍ୟ ହୋଟେଲ ଶବାନାର ସ୍ମରଣରେ ହଜିଗଲି ।

ହୋଟେଲ ଶବାନା ଆମ ସମସ୍ତଙ୍କର ଏକ ଦୁର୍ବଳତା ଥିଲା । କିନ୍ତୁ ସେ ବିଚରା ଶହୀଦ୍ ହୋଇଯାଇଥିଲା ଏବଂ ସେ ଶହୀଦ ହେବା ଦିନଠାରୁ ତା'ର ଗ୍ରାହକମାନେ ଅନାଥ ହୋଇଯାଇଛନ୍ତି । ଯଦି ମୁହଁ-ସଞ୍ଜବେଳେ କୌଣସି ବିବ୍ରତ ଲୋକ ଦେଖାଯାଏ, ତେବେ ଜାଣି ନିଅନ୍ତୁ

ଯେ ସେ ହୁଏତ ହୋଟେଲ ଶବାନାର ପୂର୍ବ ଗ୍ରାହକ କିମ୍ବା ଜଣେ ପରଦେଶୀ । ସେମିତି ବି ହୋଟେଲ୍ ଶବାନା ବନ୍ଦ ହୋଇଯିବା ପରେ, ତାର ପୂର୍ବ ଗ୍ରାହକମାନେ ନିଜକୁ ପରଦେଶୀ ବୋଲି ଭାବିବାକୁ ଲାଗିଲେଣି ।

ମୁଁ ତ କହିବି, ସାରା ଦୁନିଆରେ ହୋଟେଲ ଶବାନା ହିଁ ଏକମାତ୍ର ଜାଗା ଥିଲା, ଯେଉଁଠାରେ କି ବ୍ୟକ୍ତିଗତ ସ୍ୱାଧୀନତାକୁ ପୂରାପୂରି ସମ୍ମାନ ଦିଆଯାଉଥିଲା । ଏ ସେହି ଜାଗା ଥିଲା, ଯେଉଁଠାରେ କି କେହି କାହାକୁ ପଚାରୁ ନଥିଲେ । ସ୍ୱୟଂ ମିର୍ଜା କହୁଥିଲେ କି ଗତ ଦୁଇବର୍ଷ ଭିତରେ ହୋଟେଲ ଶବାନାର କୌଣସି ବେହେରା ବି ଭୁଲ୍‌ରେ ତାଙ୍କୁ କେବେହେଲେ ପଚାରିନାହିଁ ଯେ, ସେ ଏତେ ଡେରି-ଯାଏ ସେଠାରେ କାହିଁକି ବସିଛନ୍ତି ଆଉ କେଉଁଥିଲାଗି ବସିଛନ୍ତି ? ମୁଁ ତ କହିବି ପ୍ଲାଟୋଙ୍କର ୟୁଟୋପିଆର ବାସ୍ତବରୂପ ଥିଲା ଏହି ହୋଟେଲ୍‌ଟି । ଫୁରୁସତ୍‌ର ରାତି ଦିନ, ଏଇ ହୋଟେଲ ଛଡ଼ା ଅନ୍ୟ କେଉଁଠାରେ ନଥିଲା । ସ୍ୱର୍ଗତ ଶବାନା ହୋଟେଲ୍ ସହ ମିର୍ଜାଙ୍କର ଘନିଷ୍ଠ ସମ୍ବନ୍ଧର ଇତିହାସ କୋଡ଼ିଏ ବର୍ଷ ବ୍ୟାପୀ । ଏହି ଦୀର୍ଘକାଳ ଧରି ମିର୍ଜା ନିଜ ପକେଟରୁ ବିଲ୍ ଆଦାୟ ଦେବାର ଐତିହାସିକ ଘଟଣା କେବେହେଲେ ଦେଖାଯାଇନି । ହୋଟେଲ୍ ଶବାନାର ସ୍ଥାୟୀ ଗ୍ରାହକମାନଙ୍କର ଗୋଟିଏ କାମ ଥିଲା—"ସେଠି ଚାହା ପିଇବା ଲାଗି ଅସ୍ଥାୟୀ ଗ୍ରାହକ ଖୋଜିବା ।" ଗୋଟିଏ ଦୃଷ୍ଟିରୁ ଏମାନେ ଏହି ହୋଟେଲ୍‌ର ଏଜେଣ୍ଟ ଥିଲେ । ଏପରି କେତେକ ଗ୍ରାହକ ବି ଥିଲେ, ଯେଉଁମାନେ କି ଗତ ୨୦ ବର୍ଷ ଧରି ନିରବଚ୍ଛିନ୍ନ ଭାବରେ ବସିରହି-ଥିଲେ । ଆଉ ହୋଟେଲର ବେହେରାମାନେ ମଧ୍ୟ ନିରବଚ୍ଛିନ୍ନ ପ୍ରସ୍ତୁତ ହୋଇ ରହିଥିଲେ କି, ଗ୍ରାହକମାନେ ଅର୍ଡ଼ର ଦେଲେ, ସେମାନେ ଖାଇବା ପିଇବା ଜିନିଷ ଯୋଗାଡ଼ କରିଦେବେ । କିନ୍ତୁ ଏତେ ଦୀର୍ଘକାଳ ଧରି ଭଗବାନ୍ ଟିକିଏ ହେଲେ ଫୁରୁସତ୍ ଦେଲେ କି, ଗ୍ରାହକମାନେ ଅର୍ଡ଼ର ଦିଅନ୍ତୁ । ଶେଷରେ ସ୍ୱର୍ଗତର ଶେଷ ସମୟ ଆସିଗଲା ଆଉ ବିଚରା ଏ ଗ୍ରାହକମାନଙ୍କୁ ଅର୍ଡ଼ର ନଦେଇ, ହୋଟେଲ୍‌ରୁ ବାହାରି ଯିବାକୁ ପଡ଼ିଲା । "ହସ୍‌ରତ୍ ଉନ୍ ଗୁଞ୍ଚୋପେ ହୈ ଯୋ ବିନ୍ ଖିଲେ ମୁର୍ଝା

ଗଯ୍ୟେ ।” ଅର୍ଥାତ୍ ପ୍ରତ୍ୟୁଷିତ ନ ହୋଇ ଝାଉଁଳ ପଡ଼ିବା କଳିକା-ଗୁଡ଼ିକଙ୍କ ପାଇଁ ବଡ଼ ଅବଶୋଷ ହୁଏ ।

ମୁଁ ସେ ହୋଟେଲର ଜୀବିତାବସ୍ଥାରେ ହିଁ ତାର ନାଆଁ ଶାହିଦ୍ ହୋଟେଲ ରଖିଥିଲି କାରଣ, ଏ ହୋଟେଲରେ ଜୀବନ ଛଡ଼ା ଆଉ ସବୁ ମହଜୁଦ୍ ଥିଲା । ସେହି ଭଙ୍ଗା ଘର ବାୟୁମଣ୍ଡଳ, ସେହି କ୍ଲାନ୍ତ ପରିପାର୍ଶ୍ୱ, କଥା କଥାକେ ହାଇ ମାରୁଥିବା ବେହେରାମାନେ, ସେହି ଢୁଳାଉଥିବା ଗ୍ରାହକମାନେ, ସେହି ଉଜୁଡ଼ି ଓ ଲୁଟ୍ ହୋଇ-ଯାଇଥିବା ସୋ-କେଶ୍—ଯାହାର ନଗ୍ନତା ହେତୁ ହତାଶ ହୋଇ ମାଛିମାନେ ମଧ୍ୟ ଅନ୍ୟ ହୋଟେଲ୍ ଆଡ଼କୁ ଉଡ଼ିଯାଉଥିଲେ । ଫର୍ନିଚର୍ ମାନଙ୍କର ସେହି ନଷ୍ଟ ଭଗ୍ନତା ଓ ବିକଳ ଅବସ୍ଥା, ହୋଟେଲ୍ର ଭିତର କରିଡ଼ରର ଜନଶୂନ୍ୟତା ଯାହାକି ଦ୍ୱିପହରରେ ଅଧିକ ତେଜି ଉଠୁଥିଲା ।

ଆପଣ ବିଶ୍ୱାସ କରନ୍ତୁ, ସେହି ହୋଟେଲ୍କୁ ଆମ ସଙ୍ଗେ ଯଦି କେହି ନୂଆ ଲୋକ ପଶୁଥିଲା, ତେବେ ତା'ର ଅଫିମା ଢଙ୍ଗରଙ୍ଗ ଦେଖି ପଚାରୁଥିଲା—“ଏହି କୋଠାରେ ଆଗେ କୌଣସି ହୋଟେଲ ଥିଲା କି ?”

ଆଉ ଆମେ ତାଙ୍କୁ କହୁଥିଲୁ, “ଆଜ୍ଞା ଥିଲା କଅଣ କହୁଛନ୍ତି, ଏବେବି ଅଛି ।” ଏହା କହି ଆମେ ବେହେରାକୁ ଡାକୁଥିଲୁ, ଆଉ ବେହେରା ଭିତରର କୌଣସି କୋଠରିରୁ ଜବାବ ଦେଉଥିଲା—“ସାହେବ ଟିକିଏ ଅପେକ୍ଷା କରନ୍ତୁ, ମୁଁ ଅର୍ଡ଼ର ନେବାପାଇଁ ସାଙ୍ଗେ ସାଙ୍ଗେ ପୋଷାକ ବଦଳାଇ ଆସୁଛି ।”

ଏହିଭଳି ଅଫିମା ବାୟୁମଣ୍ଡଳ, ଏହିଭଳି ନିସ୍ତବ୍ଧତାର ଶିକାର, ଏହିପରି ତନ୍ଦ୍ରାଦାୟକ ରଙ୍ଗଢଙ୍ଗ ସେହି ଲୋକଙ୍କୁ ପୋଷାଏ, ଯେଉଁମାନେ କି ଭାବୁକ, ସାହିତ୍ୟିକ ଏବଂ କବିମାନଙ୍କ ଶ୍ରେଣୀଭୁକ୍ତ ।

ମିର୍ଜା ହୋଟେଲ ଶବାନାର ଖାସ ଏହି ଅବସ୍ଥା ଓ ପରିପାର୍ଶ୍ୱରେ ପ୍ରଭାବିତ ହୋଇ କହୁଥିଲେ—“ବନ୍ଧୁ ! ଏ ହୋଟେଲ୍

ହୁଏଁ; ଏ ଗୋଟିଏ ନିଶା । ଏହା କହି ସେ କୌଣସି ଆନ୍ତର୍ଜାତିକ ବିଷୟରେ ଯୁକ୍ତି କରୁ କରୁ ଅନ୍ୟ ବିଷୟକୁ ଗଡ଼ିଯାଆନ୍ତି ।

ମିର୍ଜାଙ୍କୁ ଏ ହୋଟେଲର ନିଶା ଏତେ କଦର୍ଯ୍ୟ ଭାବରେ ଘାରିଥିଲା ଯେ, ପ୍ରତ୍ୟେକ ଦିଲବେହେହେରିମାନଙ୍କ ଆସିବା ଆଗରୁ ସେ ଏ ହୋଟେଲ ଫାଟକ ପାଖରେ ପହଞ୍ଚି ଯାଉଥିଲେ । ସେ କହୁଥିଲେ "ଯଦି ଏ ହୋଟେଲ ରାତିରେ ବନ୍ଦ ନହୁଅନ୍ତା, ତେବେ ସେ କେବେହେଲେ ଘରକୁ ଫେରନ୍ତେ ନାହିଁ ।"

କହିବାକୁ ଗଲେ ମିର୍ଜା ଏ ହୋଟେଲର ଗ୍ରାହକ ଥିଲେ କିନ୍ତୁ କୋଡ଼ିଏ ବର୍ଷଯାଏ ନିରବଚ୍ଛିନ୍ନ ଭାବରେ ଏ ହୋଟେଲରେ ବସିରହିବା ଫଳରେ ଏପରି ଲାଗୁଥିଲା ଯେ, ଏହି ହୋଟେଲ୍‌ର ଦଖଲରେ ତାଙ୍କର ମାଲିକାନା ସ୍ୱତ୍ୱ ଠାଣ ହୋଇଗଲାଣି । ସେ କହୁଥିଲେ—"ଭାଇ ସତ କହିବାକୁ ଗଲେ, ମୁଁ ଏହି ହୋଟେଲ୍‌ର ବିଜେତା; ସାରାଦିନ ଏଠି ମୁଁ ବସି ବସି ଅନ୍ୟଲୋକଙ୍କୁ ଏଠାରୁ ତଡ଼ୁଛି । ଭାବିନିଅ ଯେ ମୁଁ ଏ ହୋଟେଲ୍‌କୁ ନିଜପାଇଁ ଜୟଲାଭ କରିଛି । ମୋତେ କେହି ଏଠାରୁ ତଡ଼ିପାରିବେନି । ଥରେ ହୋଟେଲ ମାଲିକ, ମିର୍ଜାଙ୍କର ଏହିସବୁ ହାବଭାବରେ ବିରକ୍ତ ହୋଇ ଯେତେବେଳେ ତାଙ୍କୁ ହୋଟେଲକୁ ଆସିବାଲାଗି ମନାକଲା, ସେତେବେଳେ ମିର୍ଜା ତାଙ୍କୁ ଏହି ଧମକ ଦେଇ କହିଲେ, "ଯଦି ତାଙ୍କୁ ଏ ହୋଟେଲ ଆସିବା ବନ୍ଦ କରାଯାଏ ତେବେ ସେ ଏହି ମାମଲାକୁ ରେଣ୍ଟ୍‌କଣ୍ଟ୍ରୋଲର୍ ପାଖରେ ପକାଇବେ ।" ତାଙ୍କର ଏହି ଯୁକ୍ତି ଥିଲା ଯେ, ସେ କୋଡ଼ିଏ ବର୍ଷ ହେଲା ଏହି ହୋଟେଲରେ ବାସ କରିଛନ୍ତି । ଦୁନିଆଁର କୌଣସି ଅଦାଲତ ତାଙ୍କୁ ଏ ହୋଟେଲରୁ ବେଦଖଲ କରିପାରିବେନି । ସମୟ ଗଡ଼ିଗଲେ ବେଆଇନ ଦଖଲ ମଧ୍ୟ ଆଇନସିଦ୍ଧ ହୋଇଯାଏ ।

ହୋଟେଲ୍ ଖାନାର ଏହି ପ୍ରାଧାନ୍ୟ ଥିଲା ଯେ, ଶିକ୍ଷା, ସାହିତ୍ୟ, ରାଜନୀତି, ସଂସ୍କୃତିର ଏକ ଦୋକାନ ବା ଷ୍ଟାଲ୍ ଥିଲା । ବିଶ୍ୱବିଦ୍ୟାଳୟରୁ ବି.ଏ. ପାସ୍ କରିସାରି ଅନେକ ଯୁବକ ଉଚ୍ଚ ଶିକ୍ଷା ପାଇବାପାଇଁ ହୋଟେଲ ଖାନାରେହିଁ ନାମ ଲେଖାଉଥିଲେ, କାରଣ ବିଶ୍ୱବିଦ୍ୟାଳୟରେ

ଯେଉଁସବୁ ଶିକ୍ଷାର ପରିପକ୍ୱତା ହେଉନଥିଲା, ସେସବୁ ଏହିଠାରେ ହିଁ ହୋଇଯାଉଥିଲା । ପୁନଶ୍ଚ ଏଠାରେ ପଢ଼ିବାପାଇଁ ଫିସ୍ ଦେବାକୁ ପଡ଼ୁନଥିଲା । ଯାହାହେଲ ଗୋଟିଏ କପ୍ ଚା' ମଗାଇଲେ ମଗାଇ ପାରନ୍ତି, ନ ହେଲେ ନାହିଁ । ସେଥିଲାଗି ମିର୍ଜା ହୋଟେଲ ଶବାନାର ନାମ ରଖିଥିଲେ 'ଦାରୁଲ୍ ଓଲୁମ୍' ବା ବିଶ୍ୱବିଦ୍ୟାଳୟ । ସେ ଭାବୁଥିଲେ ଯେ, ମାଗଣା ଶିକ୍ଷାଦାନର ଏତେ ସୁନ୍ଦର ବ୍ୟବସ୍ଥା ଦୁନିଆର କୌଣସି ବିଶ୍ୱବିଦ୍ୟାଳୟରେ ନାହିଁ । ଦୁନିଆର ବଡ଼ରୁ ବଡ଼ ସମସ୍ୟାମାନ ଏ ହୋଟେଲ୍‌ରେ ପହଞ୍ଚି ଶ୍ଳେଟ ହୋଇଯାଉଥିଲା । ଅନେକ ଜଟିଳ ଆନ୍ତର୍ଜାତିକ ସମସ୍ୟାର ଚଟାପଟ୍ ଫଇସଲା ଏହିଠାରେ ହିଁ ହେଇ-ଯାଉଥିଲା । ଏ ଫଇସଲାକୁ କେହି ଅବଶ୍ୟ ଗ୍ରହଣ କରୁ ନଥିଲେ, ସେଇଟା ଦୁସରା କଥା । ମିର୍ଜା କହୁଥିଲେ, "ଦୁନିଆ ଯେତେବେଳେ ଜାତି ସଂଘର ଫଇସଲାକୁ ଗ୍ରହଣ କରୁନି, ହୋଟେଲ ଶବାନାର ଫଇସଲାକୁ ଶୁଣିବ କିଏ ?"

ହୋଟେଲ ଶବାନାରେ କବିତା ଆବୃତ୍ତି ହେଉଥିଲା, କ୍ଷୁଦ୍ର ଗଳ୍ପ ପଢ଼ା ହେଉଥିଲା, ଜଣେ ଅନ୍ୟଜଣକୁ ଗାଳି ଦେଉଥିଲା, ଜଣକ ପଛରେ ତାର କୁତ୍ସା କରିବା ପାଇଁ ଏହାଠାରୁ ଅଧିକ ଭଲ ଜାଗା ଆଉ କେଉଁଠି ନଥିଲା । ସାହିତ୍ୟରେ କବିମାନଙ୍କର ସ୍ଥାନ ନିରୂପିତ କରା-ଯାଉଥିଲା । ବଢ଼ିଆ ବଢ଼ିଆ କବିତାର ପ୍ରତିଧ୍ୱନି ଆଗ ହୋଟେଲ୍ ଶବାନାରେ ଶୁଣାଯାଉଥିଲା । ତା' ପରେ ଯାଇ କବି-ସମ୍ମିଳନୀରେ ପହଞ୍ଚୁଥିଲା ।

ଏ ହୋଟେଲ୍‌ରେ କବି, ସାହିତ୍ୟିକ ଓ ଭାବୁକମାନଙ୍କର ସାନ୍ନିଧ ଲଭକରି ବେହେରାମାନଙ୍କ ମିଜାଜ୍ ମଧ୍ୟ କବିତ୍ୱପୂର୍ଣ୍ଣ ହୋଇଯାଇଥିଲା । ଏତେ କବିତ୍ୱପୂର୍ଣ୍ଣ ଯେ ଆପଣ ଲଞ୍ଚ୍‌ର ବରାଦ ଦେଲେ, ଡିନର୍ ସମୟରେ ତାହା ଆପଣଙ୍କୁ ମିଳୁଥିଲା । ସେହିପରି ବି ବେହେରାମାନେ ଭାବୁଥିଲେ କି, କବି ଓ ସାହିତ୍ୟିକମାନଙ୍କର ଖାଇବାର କି ଦରକାର । ଏଇଟା ଖାଲି ଚଳଣି ଅଛି ବୋଲି ଚାଲିଛି । ସେମାନେ କବି ଓ ସାହିତ୍ୟିକମାନଙ୍କ ଟେବୁଲ ଉପରେ ପାଣି ଗ୍ଲାସ ଥୋଇ ଦେଇ ଗାଏବ ହୋଇଯାଉଥିଲେ ଏବଂ ଲେଉଟି ପଡୁରୁ ନଥିଲେ । କୋଡ଼ିଏ

ବର୍ଷ ଯାଏ କବି ଓ ସାହିତ୍ୟିକମାନଙ୍କର ସାନ୍ନିଧ୍ୟରେ ରହି, ସେମାନଙ୍କର ବହୁତ କ୍ଷତି ହୋଇଥିଲା । ସାହିତ୍ୟିକମାନଙ୍କ ଟେବୁଲରୁ ତାଙ୍କୁ କିଛି ଟିପ୍ (ବକ୍‌ସିସ୍) ମିଳୁ ନ ଥିଲା । ବରଂ ଅନେକ ସମୟରେ ବେହେରାମାନଙ୍କୁ ସାହିତ୍ୟିକମାନଙ୍କୁ ଟିପ୍ ଦେବାକୁ ପଡୁଥିଲା । ଯାହାକୁ କି ସେମାନେ ବେଗର୍ ସଲାମ୍‌ରେ ଗ୍ରହଣ କରୁଥିଲେ । ଦିନେ ଗୋଟିଏ କବିର ବିବେକ ଉଦୟ ହେବାରୁ, ସେ ହୋଟେଲ୍‌ର ଏକ ବେହେରାକୁ ଡାକି କହିଲେ—"ବାବୁ ! ମୁଁ ତ ତୋତେ କେବେ ହେଲେ ଟିପ୍ ଦେଇନି । ଆସ, ମୁଁ ଆଜି ତମକୁ ଟିପ୍ ପରିବର୍ତ୍ତେ ମୋ ନିଜର ହ' ଧାଡ଼ି କବିତା ଶୁଣେଇ ଦେଉଛି ।"

ଏହାପରେ ବେହେରା କହିଲା—"ମୁଁ ତ ଏ ଟିପ୍‌କୁ ଗ୍ରହଣ କରି ନେଉଛି । କିନ୍ତୁ ଭଗବାନ ନ କରନ୍ତୁ, ଯଦି ଏ ପଦ ମୋର ପସନ୍ଦ ହୋଇ ମୁଁ ବାହାବ୍‌ବା କରେ, ତେବେ ସଲାମ୍ ଦେବାର ଭାର ତୁମ ଉପରେ ରହିଲା ।"

ସେହି ହୋଟେଲର ବେହେରାମାନଙ୍କ ଉପରେ ଭାରି ଦାୟିତ୍ୱ ନ୍ୟସ୍ତ ଥିଲା । ବିଶେଷକରି ସେମାନଙ୍କୁ ସ୍ମୃତିଶକ୍ତି ପ୍ରଖର କରି ରଖିବାକୁ ପଡ଼ୁଥିଲା, କାରଣ ଅଧିକାଂଶ କ୍ଷେତ୍ରରେ ସକାଳୁ ପିଆଯାଇ-ଥିବା ଚାହା ବିଲ୍ ସନ୍ଧ୍ୟାରେ ଆଦାୟ କରାଯାଉଥିଲା ଏବଂ ବେହେରା-ମାନଙ୍କୁ ସନ୍ଧ୍ୟାପର୍ଯ୍ୟନ୍ତ ନିଜ ସ୍ମୃତିଶକ୍ତିର ପରୀକ୍ଷା ଦେବାକୁ ପଡ଼ୁଥିଲା । ଖରାପ ସମ୍ପର୍କରେ ରହି ରହି ସେ ହୋଟେଲ୍ ବେହେରାମାନଙ୍କ ସ୍ୱଭାବ ମଧ୍ୟ ଖରାପ ହୋଇଯାଇଥିଲା । ସୁତରାଂ 'ହୋଟେଲ ଶବାନା' ର ଜଣେ ବେହେରା ଗୋଟିଏ ଗଜଲ ସମ୍ପୂର୍ଣ୍ଣ କରିଦେଇଥିଲା । ସେ କହିଥିଲେ—"ବାବୁ ! ଦିନସାରା ତ ମୁଁ ବେକାର ଥାଏ । ପଦଗୁଡ଼ିକ କହିଲେ ମୋର ହୃଦୟର ବି ଉଶ୍ୱାସ ହୋଇଯିବ, ସାହିତ୍ୟର ସେବା ବି ହୋଇଯିବ ।"

ମିର୍ଜା ହୋଟେଲ ଶବାନାର ଯବାନ୍ ସମୟ ମଧ୍ୟ ଦେଖିଥିଲେ । ତାଙ୍କ କହିବା ଅନୁଯାୟୀ ଏହି ସମୟ କୋଡ଼ିଏ, ପଚିଶ ଦିନରୁ ବେଶି ନ ଥିଲା । ସେହି ସମୟରେ 'ହୋଟେଲ୍ ଶବାନା' ରେ ଲୋକଙ୍କର ଖୁବ୍ ଗହଳଚହଳ ଲାଗୁଥାଏ ।

ହୋଟେଲର ମାଲିକ୍ ବୃଦ୍ଧିଜୀବୀମାନଙ୍କ ଅତ୍ୟଧିକ ପୃଷ୍ଠପୋଷକତାରେ ଥକିଯାଇ, ଯୁବକମାନଙ୍କୁ ଅଧିକ ଆକର୍ଷଣ କରିବା ପାଇଁ ଥରେ ଏକ ଯୋଜନା କଲେ । ସୁତରାଂ ଥରେ ଅଯଥାରେ ହୋଟେଲ ଖାନାରେ ବଡ଼ପାଟିଆ ବାଜା ଉଠିଲା । ଯେଉଁଦିନ ଏ ବଡ଼ପାଟିଆ ଆସିଲା, ସେଦିନ ମିର୍ଜା ଖୁବ୍ ଖପା ହୋଇଗଲେ । କାରଣ, ମିର୍ଜା କଥାବାର୍ତ୍ତା ଜରିଆରେ ଯେଉଁ ପାଟି କରୁଥିଲେ ତା ସହିତ ବଡ଼ପାଟିଆର ପାଟି ଖାପ ଖାଉ ନଥିଲା । ମିର୍ଜା ବଡ଼ପାଟିଆଟାକୁ ସେଠାରୁ ନିକାଳି, ଦମ ନେବେ ବୋଲି ମନସ୍ଥ କରିଥିଲେ । ତା'ର ପ୍ରମାଣ ହେଉଛି, ଗୋଟିଏ ଖୋଳରେ ଦୁଇଟି ତରବାରି ରହିପାରେନା । ସେ ସମସ୍ତ ମିର୍ଜାଙ୍କ ପକ୍ଷରେ ନିଜର ବୌଦ୍ଧିକ ଆଲୋଚନା ଜାରି ରଖିବା ପାଇଁ ଅତ୍ୟନ୍ତ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ୁଥିଲା । ବଡ଼ପାଟିଆ ବାଜା ବାଜି ଯେତେବେଳେ ବନ୍ଦ ହୋଇଯାଉଥିଲା, ସେତେବେଳେ ମିର୍ଜା ବାଜି ଉଠୁଥିଲେ । ଆଉ ଯେତେବେଳେ ମିର୍ଜା ଚୁପ୍ ହୋଇଯାଉଥିଲେ, ସେତେବେଳେ ବଡ଼ପାଟିଆ ବାଜିବାକୁ ଆରମ୍ଭ କରୁଥିଲା । ବଡ଼ପାଟିଆ ଯୋଗୁଁ ମିର୍ଜାଙ୍କର ଚିଲେଇ ଚିଲେଇ କଥା କହିବାର ଆଦତ୍ ହୋଇଯାଇଥିଲା । ସୁତରାଂ ହୋଟେଲ୍ ବାହାରେ ମଧ୍ୟ ତାଙ୍କର କଥାବାର୍ତ୍ତାର ଢଙ୍ଗ ଏମିତି ହୋଇଯାଇଥିଲା ଯେ, ସେ ଯାହା ସହିତ କଥାବାର୍ତ୍ତା କରୁଥିଲେ, ସେ ସତେକି ଜନ୍ମରୁ କାଲ । ବଡ଼ପାଟିଆ 'ହୋଟେଲ୍ ଖାନା'କୁ ଆସିବା ସଙ୍ଗେ ସଙ୍ଗେ ନଳି-ପେଣ୍ଟିଆ ଆଉ ଝିଅକେଶଧାରୀ ପୁଅମାନଙ୍କର ଭିଡ଼ ଅଧିକ ହୋଇଯାଇଥିଲା । ମିର୍ଜା ଏମାନଙ୍କୁ ଦେଖି ଦାନ୍ତ କଡ଼ମଡ଼ଉ ଥିଲେ ।

ଖୋଦ୍ ମିର୍ଜା କହୁଥିଲେ, ବଡ଼ପାଟିଆକୁ ଏହି ଯୁବକମାନେ ନିଜର ବ୍ୟକ୍ତିଗତ ଭାବପ୍ରବଣତାର ବିକାଶପାଇଁ ଏକ ମାଧ୍ୟମରୂପେ ବ୍ୟବହାର କରୁଥିଲେ । ସେହିଦିନର ଗୋଟିଏ ଘଟଣା, ଗୋଟିଏ ଝିଅ ନିଜ ମାଆ ସହିତ ହୋଟେଲ ଖାନାରେ ପ୍ରବେଶ କଲା । ସାମନା ଟେବୁଲରେ ଜଣେ ସୁନ୍ଦର ଯୁବକ ବସିଥିଲା । ସେ ଝିଅକୁ ଦେଖିବାମାତ୍ରେ ପଇସା ଦେଇ ବଡ଼ପାଟିଆରେ ଗୀତଟିଏ ବଜେଇଦେଲା—

'ଇସ୍ ପେ ପହିଲେ କି କହିଁ ମୈନେ ତୁମ୍ହେ ଦେଖା'

ଅର୍ଥାତ୍ ମୁଁ ତୁମକୁ ପୂର୍ବରୁ ବି କୌଣସିଠାରେ ଦେଖିଛି । ଏହି ଗୀତ ବାଜିବା ସମୟରେ ଝିଅଟି ଲୁଚିଲୁଚିକାଣିରେ ଯୁବକଟିକୁ ଚାହୁଁଥାଏ । ତା'ପରେ ଝିଅ ଉତ୍ତରରେ ଏହି ଗୀତଟି ବୋଲେଇଦେଲା—

"ଯେ ତୋ କହୋ କୌନ୍ ହୋ ତୁମ୍, କୌନ୍ ହୋ ତୁମ୍" ଅର୍ଥାତ୍ କୁହ ତୁମେ କିଏ, ତୁମେ କିଏ ।

ପୁଣି ଯୁବକଟି ଜବାବ ଦେଲା—"ଆବାରା ହୁଁ, ଯା ଗର୍ଦ୍ଦିଶ୍‌ମେ ହୁଁ, ଯା ଆସମାନକା ତାରା ହୁଁ ।" ଅର୍ଥାତ୍ ମୁଁ ଭଗା, କିମ୍ବା ଦୁର୍ଭଗା କିମ୍ବା ଆକାଶର ତାରା ଅଟେ ।

ଝିଅର ମା' ଯେ କି ବହୁତ ଡେରିଯାଏ ନିଜ ଝିଅ ଓ ସେ ପୁଅର ସମ୍ବନ୍ଧ ଦୃଢ଼ୀଭୂତ ହେଉଥିବାର ଦେଖୁଥିଲା, ସେ ହଠାତ୍ ଉଠି ଠିଆ ହୋଇଗଲା ଆଉ ବଡ଼ପାଟିଆ ବାକ୍‌ସରେ ପଇସା ଦେଇ ଏ ଗୀତଟି ବୋଲେଇ ଦେଲା—

"ଆଲ୍ଲା ବଚାଏ ନଓ୍ୱଜବାନୌଁସେ" ଅର୍ଥାତ୍ ଭଗବାନ୍ ଏ ଟୋକାଙ୍କ ହାତରୁ ରକ୍ଷାକରନ୍ତୁ ।

ମିର୍ଜା ଏସବୁ ଘଟଣା ଦେଖି ରକ୍ତଗରମ ହେଉଥିଲେ । ତାଙ୍କର ଯୌବନ ବହୁତ ଆଗରୁ ଚାଲିଯାଇଥିଲା । ଏଥିପାଇଁ ସେ କୌଣସି ଯୁବକର ଆନନ୍ଦ ସହିପାରୁ ନଥିଲେ । ଶେଷରେ ସେ ସେହି ବଡ଼ପାଟିଆ ଶତ୍ରୁକୁ ହୋଟେଲରୁ କଢ଼େଇଦେବାରେ ବନ୍ଦୋବସ୍ତ କଲେ । ସେ ସହମତାବଲମ୍ବୀ ଓ ସହାବସ୍ଥାନୀ ଶ୍ରଦ୍ଧାଳୁ ବନ୍ଧୁମାନଙ୍କଠାରୁ ଚାନ୍ଦା ଆଦାୟ କଲେ ଏବଂ ସେହି ପାଣ୍ଠିରୁ ବଡ଼ପାଟିଆ ବାକ୍‌ସରେ ପଇସା ପକେଇ ନିରବଚ୍ଛିନ୍ନଭାବରେ ଗୋଟିଏ ରେକର୍ଡ଼ ବଜେଇଲେ, ଯେଉଁ ଗୀତ କି ଯୁବକମାନଙ୍କ ବିରକ୍ତିକର ହେଉଥିଲା । ମୋର ମନେଅଛି ଏହି ଗୀତଟି ହୋଟେଲ୍ ଶବାନାରେ ନିରବଚ୍ଛିନ୍ନଭାବରେ ଆଠଦିନ ଧରି ବାଜିଥିଲା ଏବଂ ଏହା ଫଳରେ ଯୁବକମାନଙ୍କର ସେଠାକୁ ଯିବାଆସିବା ଧୀରେ ଧୀରେ ବନ୍ଦ ହୋଇଗଲା । ଏହିପରି ଭାବରେ ସେହି ହୋଟେଲ ଉପରେ ଚିନ୍ତାଶୀଳ ବ୍ୟକ୍ତିମାନଙ୍କର ଅଧିକାର ପୁନଶ୍ଚ ପ୍ରତିଷ୍ଠିତ

ହୋଇଗଲା । ମିର୍ଜା ଏହ ବଜପୁରେ ଖୁବ୍ ଆନନ୍ଦତ ହୋଇଥିଲେ । କାରଣ, ହୋଟେଲ ଶବାନାରେ ବଡ଼ଘାଟିଆର ସ୍ୱର ପରିବର୍ତ୍ତେ ମିର୍ଜାଙ୍କ ସ୍ୱରର ଝଙ୍କାର ପୁଣି ଶୁଭିବାକୁ ଲାଗିଲା ।

ହୋଟେଲ ଶବାନାକୁ ବହୁପ୍ରକାରର କାରବାରୀ ଲୋକ ମଧ୍ୟ ଆସୁଥିଲେ । ମୁଁ ତ କହିବ ଯେ ଏହାହିଁ ଏକମାତ୍ର ହୋଟେଲ ଥିଲା, ଯେଉଁଠି କ ହୋଟେଲ୍ ଛଡ଼ା ଅନ୍ୟସବୁ କାରବାର ଚଳୁଥିଲା । ଏଠି ମଟର ବକ୍ରିର କାରବାର ହେଉଥିଲା, ସମ୍ପତ୍ତି-ବାଡ଼ ବକ୍ରି କରାଯାଉଥିଲା ଘୋଡ଼ା ଦୌଡ଼ରେ ଟଙ୍କା ଲଗାଯାଉଥିଲା; ମୋଟ ଉପରେ ଏଠି କଅଣ ନ ହେଉଥିଲା !

ମିର୍ଜା ଏପରି ନୟମିତଭାବରେ ହୋଟେଲ୍ ଶବାନାକୁ ଆଥିସୁଲେ, ଯେପରି କ ସେ ହୋଟେଲକୁ ନଯାଇ ନଜ ଦପ୍ତରକୁ ଯାଉଥାନ୍ତି । ଯଦ କେହି ତାଙ୍କୁ ଭେଟିବାକୁ ତାଙ୍କ ଘରକୁ ଯାଉଥିଲା, ତେବେ ସେ ତାଙ୍କୁ ହୋଟେଲ ଶବାନାକୁ ଆସିବାପାଇଁ ଉପଦେଶ ଦେଉଥିଲେ । ସେ କହୁଥିଲେ—"ତାଙ୍କ ଘର ମୋଗଲପୁରରେ ଅଛି ସତ କନ୍ତୁ ସେ ଘରର ବୈଠକଖାନା ହୋଟେଲ ଶବାନାରେ ଅଛି ।"

ଆପଣଙ୍କୁ ଲୁଚେଇବ କଅଣ । ମୋ' ଘରର ବୈଠକଖାନା ମଧ୍ୟ ସେହି ହୋଟେଲରେ ଥିଲା ।

ହୋଟେଲ ଶବାନା ବଷୟରେ ମିର୍ଜାଙ୍କର ସମସ୍ୟାନୁବର୍ତ୍ତିତା ବଷୟ ଏହି କଥାରୁ ଅନ୍ଦାଜ କରିହେବ । ମିର୍ଜାଙ୍କ ସହ ମୋର ଏକ ଜରୁରୀ କାମ ପଡ଼ିଲା, ଯେଉଁଥିଲାଗି ତାଙ୍କର ମୋ' ସାଙ୍ଗରେ ଯିବା ନହାତ ଦରକାର ଥିଲା ।

ମିର୍ଜା କହିଲେ—"ତୁମେ କାଲି ସକାଳ ଆଠଟାରେ ମୋ ଘରକୁ ଆସ । ମୁଁ ତୁମ ସାଙ୍ଗରେ ଯିବ ।"

ମୁଁ କହିଲି—"ଏତେ ସକାଳୁ ମୋ ହାଇ ଆସିବା ହୋଇ-ପାରିବ ନାହିଁ । ଯଦ ଦଶଟାବେଳେ ଆପେ ଚଳିବନ ?"

ମିର୍ଜା ଚମକିପଡ଼ି କହିଲେ—"ମୁଁ ଦଶଟାବେଳେ ତୁମ ପାଖରେ ମୋଟେ ଯାଇପାରିବି ନାହିଁ, କାରଣ ଦଶଟାବେଳେ ମୁଁ ତ ହୋଟେଲ ଶବାନାକୁ ଯାଏ ।

ଏଇଟା ସତକଥା ଯେ ହୋଟେଲ ଶବାନାର ଗ୍ରାହକମାନଙ୍କର ଚରିତ୍ର ଏକପ୍ରକାର ହୋଇଯାଇଥିଲା । ତା'ର କେତେକ ଗ୍ରାହକ ହିନ୍ଦୁସ୍ତାନ ଛାଡ଼ି ବିଦେଶ ଚାଲିଯାଇଥିଲେ । ତଥାପି ସେମାନେ ୟୁରୋପ, ଆମେରିକାରେ ମଧ୍ୟ ହୋଟେଲ ଶବାନାକୁ ଝୁରୁଥିଲେ । ଜଣେ ଗ୍ରାହକ ନ୍ୟୁୟର୍କରୁ ମୋତେ ଚିଠି ଲେଖିଥିଲା—"ବନ୍ଧୁ, ନ୍ୟୁୟର୍କରେ ସବୁକିଛି ଅଛି କିନ୍ତୁ ହୋଟେଲ୍ ଶବାନା ନାହିଁ । ଏଥିଲାଗି ଏ ସହରରେ ମନ ଲାଗୁନି । ମୋର ଯଦି କ୍ଷମତା ଥାଆନ୍ତା, ତେବେ ସାରା ଦୁନିଆକୁ ମୁଁ ହୋଟେଲ ଶବାନା ବନେଇ ଦିଅନ୍ତି ।"

ହୋଟେଲ ଶବାନା କେତେ ବିପ୍ଳବ ଦେଖିଛି କିନ୍ତୁ ତା'ର ଧୀରସ୍ଥିରତା ଉପରେ କିଛି ଆଞ୍ଚ ଆସିନି । ମିର୍ଜା ବରାବର କହୁଥିଲେ, ହୋଟେଲ ଶବାନା ଏକ ସାମାଜିକ ରେଫ୍ରିଜରେଟର ଅଟେ । ଏଠି ରହି ଲୋକ ନିଜର ପ୍ରକୃତ ଅବସ୍ଥାରେ ତିଷ୍ଠି ରହି ପାରିବ । ଆମେ ବର୍ଷ ବର୍ଷ ଧରି ସେହି ରେଫ୍ରିଜରେଟରରେ ଆବଦ୍ଧ ରହି-ଥିଲୁ । ଶେଷ କେତେ ବର୍ଷ ଧରି ସେହି ହୋଟେଲ ବନ୍ଦ ହୋଇଯିବାର ଜନରବ ଶୁଣି ଆସିଥିଲୁ କିନ୍ତୁ ଏଥିରେ କେବେହେଲେ ବିଶ୍ୱାସ ହେଉ ନଥିଲା; ବରଂ ଏହି ବିଶ୍ୱାସଟି ଦୃଢ଼ ହୋଇଯାଇଥିଲା ଯେ ଯେଉଁ ହୋଟେଲ୍‌କୁ ତା'ର ଗ୍ରାହକମାନେ ବିଗାଡ଼ି ପାରୁ ନଥିଲେ, ଦୈବ ତା'ର କ'ଣ ବିଗାଡ଼ି ପାରିବ । ସେହିପରି ବି ସେ ହୋଟେଲ୍‌ରେ ବିଗାଡ଼ିବା ପାଇଁ କ'ଣ ଆଉ ବାକି ଥିଲା । କିନ୍ତୁ ହଠାତ୍ ହୋଟେଲ ଶବାନା ସତରେ ବନ୍ଦ ହୋଇଗଲା ।

ମିର୍ଜା କହାକଟା କରି କହୁଥିଲେ—"ବନ୍ଧୁ! ହାଇଦରାବାଦ୍‌ର ଆଉ ବଞ୍ଚିଲା କ'ଣ । ମଖ୍‌ଦୁମ୍ (କବି) ଚାଲିଗଲେ, ଯାମି ଚାଲିଗଲେ, ଓରେବ୍ ଚାଲିଗଲେ, ବାକି ରହିଯାଇଥିଲା ହୋଟେଲ୍ ଶବାନା; ସେ ମଧ୍ୟ ଚାଲିଗଲା । କାହାର କାହାର ଦରଦ୍ ଆମେ ଛାତିରେ ଲୁଚେଇ

ବୁଲିବା । ଏଥର ଆମେ ବି ପେଡ଼ିପୁଟୁଳା ବାନ୍ଧି ଚାଲିଯିବା ଦରକାର ।

ଏତେ ଦିନ ପରେ ଗଅଣ ଦିନ ଯେତେବେଳେ ମିର୍ଜା ମୋତେ ଭେଟିଲେ, ସେତେବେଳେ ସେ ଏକ୍ସରେ ରିପୋର୍ଟ ଭଳି ଚେହେରାରେ ଭେଟିଲେ । ଜାଣେନା କଅଣ ତାଙ୍କର ହୋଇଯାଇଥିଲା । ବିଦାୟ ନେଲାବେଳେ ମୋତେ କହିଲେ, "କାଲି ମୋର ଘରେ ରାତି ଭୋଜନ କରିବ ।"

ମୁଁ ପଚାରିଲି, "କିଛି ଉତ୍ସବ ଅଛି କି ?"

ସେ କହିଲେ, 'ହଁ' ।

ମୁଁ ପଚାରିଲି, "କି ଉତ୍ସବ ?"

ଅଶ୍ରୁପୂର୍ଣ୍ଣ ନୟନରେ ସେ କହିଲେ—"କିଛି ନୁହେଁ, କାଲି ହୋଟେଲ୍ ଶବାନାର ଶୁଦ୍ଧି ଘର ।" ଏହା କହି ମିର୍ଜା ଏକ ଚୁଲି-ଘର ଲୋକଙ୍କ ଭିଡ଼ ଭିତରେ ଉଭେଇଗଲେ ।



# ନିର୍ବାଚନ ଧ୍ୱନି

ମିର୍ଜାଙ୍କର ବେଖାପିଆ କଥା ମୋତେ ପସନ୍ଦ ଲାଗିବାର କାରଣ ହେଉଛି ସେଥିରୁ ବେଳେବେଳେ ବୁଦ୍ଧିମତ୍ତା ପ୍ରକାଶ ପାଇଥାଏ । ନିର୍ବାଚନ ହାଙ୍ଗାମା କାଳରେ ଦିନେ ସେ କହି ଲାଗିଲେ—"ଆଧୁନିକ ଯୁଗରେ ଭାରତର ଗଣତନ୍ତ୍ରଟା ସେଇ ପୁରୁଣାକାଳିଆ ହୋଇ ରହିଛି ।"

ମୁଁ ଏହାର ସ୍ପଷ୍ଟୀକରଣ କରିବା ପାଇଁ ପଚାରିଲି—"ଏ ବେଖାପିଆ କଥାର ମତଲବ କ'ଣ ?"

ସେ କହିଲେ—"ମତଲବ ଅତି ପରିଷ୍କାର ।" ଇତିହାସ ପଢ଼ିଲେ ତମକୁ ଜଣାଯାଏ ଯେ ପୂର୍ବ କାଳରେ ଯେତେବେଳେ କାଗଜ ଆବିଷ୍କୃତ ହୋଇ ନଥିଲା, ସେତେବେଳେ ମଣିଷ କାନ୍ଥ ଓ ପର୍ବତ ଗାତରେ ଲେଖୁଥିଲା, ଆଉ ଭାରତର ଆଜିକାଲିଆ ଗଣତନ୍ତ୍ରରେ ନିର୍ବାଚନ ପ୍ରାର୍ଥୀ ମଧ୍ୟ କାନ୍ଥରେ ନିର୍ବାଚନ ଧ୍ୱନି ସବୁ ଲେଖୁଛି । ଆମର ଗଣତନ୍ତ୍ର, ପ୍ରସ୍ତର ଯୁଗର ଟିକିଏ ଆଗରେ ରହିଛି ଏବଂ ଆମ ନିର୍ବାଚନ ପ୍ରାର୍ଥୀମାନଙ୍କୁ ଏପର୍ଯ୍ୟନ୍ତ ଖବର ମିଳିନି ଯେ, ମଣିଷ କାଗଜର ଉଦ୍ଭାବନ କରି ସାରିଲାଣି ।"

ଏହା କହିଲାବେଳେ ମିର୍ଜାଙ୍କ ମୁହଁରୁ ସେହି ଫେଣ ବାହାରି ପଡ଼ିଲା, ଯାହାକି ସାଧାରଣତଃ କ୍ରୋଧ ବେଳେ ତାଙ୍କ ମୁହଁରୁ ବାହାରେ ।

ମୁଁ ପଚାରିଲି—"ଆଚ୍ଛା, କଥା କ'ଣ ? ଗଣତନ୍ତ୍ର ଉପରେ ବହୁତ ଖପା ଜଣାଯାଉଛ ?"

ସେ କହିଲେ—"ରାଜନୀତି କରିବ କଅଣ ! ଗତ ପନ୍ଦର ଦିନ ଧରି ରାତିସାରା ଅନିଦ୍ରା ରହି ନିଜ ଘରକୁ ଜଗି ରହିଥିଲି । ସାହିସାରା ନିର୍ବାଚନର ଧ୍ୱନିରେ ରଙ୍ଗିନ ହୋଇଯାଇଥିଲା କିନ୍ତୁ ମୋ ଘରର କାନ୍ଥ ଏକ ସାଧୁ ସନ୍ଥଙ୍କ ଆଲଖାଲର ସାମନା ଅଂଶ ପରି ଉଜ୍ଜ୍ୱଳ ଥିଲା । କିନ୍ତୁ କାଲି ରାତିରେ ଅଳ୍ପ ସମୟ ପାଇଁ ମୋତେ ଟିକିଏ ନିଦ ଲାଗିଗଲା । ସେତିକିବେଳେ କେହି ଜଣେ ଅତି ନିର୍ଦ୍ଦୟ ଭାବରେ ମୋ କାନ୍ଥରେ ଗୋଟିଏ ପୂରା ମଣିଷ ଆକାରର ନିର୍ବାଚନ ଧ୍ୱନିଟାଏ ଲେଖି-ଦେଇଯାଇଛି । ଆଉ ସେହି ପାର୍ଟିର ଧ୍ୱନି ଲେଖିଛି, ଯାହା ଉପରେ ମୁଁ ଚିଡ଼େ । ତୁମେ କୁହତ, ଏ କେଉଁ ଧରଣର ଗଣତନ୍ତ୍ର, ଯେଉଁଥିରେ କି ମଣିଷ ନିଜ ଘର କାନ୍ଥରେ ଆପଣା ପସନ୍ଦ ପାର୍ଟିର ଧ୍ୱନି ମଧ୍ୟ ଲେଖେଇ ପାରିବ ନାହିଁ । ଖାଲି ନିଜର କହିବା ସ୍ୱାଧୀନତାଟା ମିଳିଗଲେ କଅଣ ହେବ ? ମୁଁ ଭାବିଲି, ଏବେ କାହାକୁ ଏହି କାନ୍ଥ ଉପରେ ଲେଖିବା-ଲାଗି ଆଉ ଆଜ୍ଞାକୁ ଅନୁମତି ଦେବି ନାହିଁ । କିନ୍ତୁ କିଛି ସମୟ ପରେ ମୋର ପସନ୍ଦଆ ପାର୍ଟିର କର୍ମୀମାନେ ଆସି ସେଠାରେ ପହଞ୍ଚିଗଲେ । କାନ୍ଥରେ ବିରୁଦ୍ଧ ପାର୍ଟିର ଧ୍ୱନି ଦେଖି କହିବାକୁ ଲାଗିଲେ—"ଆଚ୍ଛା, ଆପଣ ଆମକୁ ଭୋଟ ଦେବାଲାଗି ପ୍ରତିଜ୍ଞା କରିଛନ୍ତି; ଅଥଚ ନିଜ କାନ୍ଥରେ ଧ୍ୱନି ଲେଖିବାର ଅଧିକାର ବିରୁଦ୍ଧ ଦଳକୁ ଦେଉଛନ୍ତି । ଏହାହିଁ କଅଣ ରାଜନୀତିର ସାଧୁତା ?"

ମୁଁ କହିଲି, "ଆପଣ ଚିନ୍ତା କରନ୍ତୁ ନାହିଁ । ମୁଁ ଏହି ଧ୍ୱନିକୁ ଲିଭେଇ ଦେବି ।" ସୁତରାଂ ପରଦିନ ମୁଁ କାନ୍ଥକୁ ଦଷାଘଷ କରେଇ ଧୁଆଇ ଦେଲି ଏବଂ ତା ଉପରେ ନିଜ ତରଫରୁ ବଡ଼ ବଡ଼ ଅକ୍ଷରରେ ଏହି ଲେଖା ଲେଖେଇ ଦେଲି—"ଏହି କାନ୍ଥ ଉପରେ ଯେ କେହି ନିର୍ବାଚନ ପ୍ରାର୍ଥୀ ଧ୍ୱନି ଲେଖିବ, ତାକୁ ଏ ଘରର ଭୋଟ ମିଳିବ ନାହିଁ ।" ଏହାପରେ କୌଣସି ବି ପ୍ରାର୍ଥୀ କାନ୍ଥରେ ଧ୍ୱନି ଲେଖିଲେ ନାହିଁ ।

ମୁଁ ହସି କରି କହିଲି – "କିନ୍ତୁ ମିର୍ଜା ! ଏ କଥା ବି ଭାବ ଯେ ବେମାରର ଠିକ୍ ଚିକିତ୍ସା କରିବା ଦ୍ୱାରା ତୁମେ ନିଜେ ନିଜ କାନ୍ଥର ସୌନ୍ଦର୍ଯ୍ୟକୁ ନଷ୍ଟ କରିଛ ।"

ସେ କହିଲେ—"ମୋ କାନ୍ଥର ସୌନ୍ଦର୍ଯ୍ୟକୁ ନଷ୍ଟ କରିବାର ପୂର୍ଣ୍ଣ ଅଧିକାର ମୋର ରହିଛି; କିନ୍ତୁ ମୋ କାନ୍ଥକୁ ନଷ୍ଟ କରିବାକୁ ନିର୍ବାଚନ ପ୍ରାର୍ଥୀ କିଏ ?"

ମିର୍ଜାଙ୍କର ଜବାବ ବିଲ୍‌କୁଲ୍ ଠିକ୍ ଥିଲା । ଏଥିଲାଗି ଚୁପ୍ ରହିବାକୁ ପଡ଼ିଲା । କିନ୍ତୁ ଏ କେବଳ ମିର୍ଜାଙ୍କ ସମସ୍ୟା ନୁହେଁ, ଏହା ପ୍ରତ୍ୟେକ ଲୋକର ସମସ୍ୟା, ଯିଏ କି ଗୋଟିଏ ପାଚେରି ଭିତରେ ରହିଥାଏ ।

ନିର୍ବାଚନ କାଳରେ ଫୁଟ୍‌ପାଥ୍ ଉପରେ ଜୀବନ କଟାଉଥିବା ଲୋକମାନେହିଁ ଖୁବ୍ ଭାଗ୍ୟବାନ୍ ଜଣା ଯାଆନ୍ତି । ସେମାନଙ୍କର ଘର ନଥାଏ କି ଘରକାନ୍ଥ ନଥାଏ । ନଥିବ ବାଉଁଶ କି ନବାଜିବ ବଇଁଶୀ । ମିର୍ଜା ଗାଲିବ୍‌ଙ୍କ କାଳରେ ଦେଶରେ ଗଣତନ୍ତ୍ରର ଚଳନ ନଥିଲା । କିନ୍ତୁ ତଥାପି ଗାଲିବଙ୍କର ଦୂରଦୃଷ୍ଟିକୁ ପ୍ରଶଂସା କରିବାକୁ ପଡ଼ୁଛି; ଯିଏ କି ଶହେ ବର୍ଷ ପୂର୍ବେ ଏହି ଇଚ୍ଛା ପ୍ରକାଶ କରିଥିଲେ—

ବେ-ଦରୋଦିବାର ସା ଏକ୍ ଘର୍ ବନାୟା ଚାହିୟେ
( କାନ୍ଥ ନଥିବା ଘରଟିଏ ତିଆରି କରିବା ଉଚିତ )

ସତ କହିବାକୁ ଗଲେ ଆମ ଗଣତନ୍ତ୍ରର ମୂଳଦୁଆ ଏହି ପୁରୁଣାକାଳିଆ କାନ୍ଥ ଉପରେ ଥୁଆ ହୋଇଛି । ଇଆଡ଼େ ନିର୍ବାଚନ ପ୍ରାର୍ଥୀଙ୍କ ମନୋନୟନ ପତ୍ର ଗୃହୀତ ହେବା ସଙ୍ଗେ ସଙ୍ଗେ ତାଙ୍କର କର୍ମୀମାନେ ହାତରେ ରଙ୍ଗ ଡବା ଓ ବ୍ରସ୍ ନେଇ କାନ୍ଥ ଉପରକୁ କୁଦି ପଡ଼ନ୍ତି । ପୁଣି ମଜାକଥା ଏହିକି ଯେ ଧ୍ୱନି ଏପରି ଲୋକଙ୍କ ହାତରେ ଲେଖାଯାଏ, ଯାହାଙ୍କୁ କୌଣସି କାଗଜ ଉପରେ ଦସ୍ତଖତ କରିବା ପାଇଁ ଯଦି କୁହାଯାଏ, ତେବେ ସେମାନେ କିଛି ଚିନ୍ତା ନକରି ଅଙ୍ଗୁଳିକୁ ଭାବରେ ଟିପଚିହ୍ନ ବସେଇ ଦିଅନ୍ତି । (ଏମିତିଆ ତ କେତେ ନିର୍ବାଚନ ପ୍ରାର୍ଥୀ ଅଛନ୍ତି, ଯେଉଁମାନଙ୍କ ଭିତରେ ମଧ୍ୟ ଏହିସବୁ ମହତ୍ ଗୁଣ ରହିଛି) । ପରିଣାମ ଏଇଆ ହୁଏ ଯେ, ଉକ୍ତ ଷ୍ଟେସନର ଭୁଲ ଗୁଡ଼ିକ ସମାଜରେ ପ୍ରଚଳିତ ହୋଇଯାଏ । ଉଦାହରଣ ସ୍ୱରୂପ ମୋ ପିଲା

Congress କୁ Kong ace, Socialist Party କୁ Sochalist Party ଲେଖୁଛି । ଯେବେ ମୁଁ ତା ଲେଖାର ଭୁଲ ଦେଖାଏ ତେବେ ସେ ରେଫରେନସ ମାଗଁ ନିଜ ସ୍କୁଲର କାନ୍ଥକୁ ଦେଖେଇ ଦିଏ । ମିର୍ଜା ବିଲକୁଲ୍ ଠିକ୍ କହନ୍ତି କି ଆମ ଗଣତନ୍ତ୍ରର ଏ ପର୍ଯ୍ୟନ୍ତ ଶିକ୍ଷା ସଙ୍ଗେ କୌଣସି ସମ୍ପର୍କ ହୋଇ ନାହିଁ । ନିର୍ବାଚନର ଧ୍ୱନିକୁ ଦେଖି ଜଣାଯାଏ କି ଆମ ଦେଶରେ ନିରକ୍ଷରତା ଯେ କେବଳ ରହିଛି ତା ନୁହେଁ, ବରଂ ତାକୁ ପ୍ରଚଳିତ କରିବାର ଫଳପ୍ରଦ ଯୋଗାଡ଼ଯନ୍ତ୍ର ରହିଛି ।

ସତ କହିବାକୁ ଗଲେ ଆମ ଦେଶରେ ରଚନା ଓ ସମ୍ପାଦନାର କାମ ବେଶିଭାଗ କାନ୍ଥବାଡ଼ ଉପରେ ହିଁ ହୁଏ । ନିର୍ବାଚନ ସରିଗଲେ ପ୍ରାର୍ଥୀଗୁଡ଼ା ଭୋଟରମାନଙ୍କ ନଜରରୁ ଖୁବ୍ କମ୍‌ରେ ୫ ବର୍ଷଯାଏ ଉଭାନ ହୋଇଯାନ୍ତି କିନ୍ତୁ ତାର ଧ୍ୱନି ପ୍ରତ୍ୟେକ ଦିନ ଆପଣଙ୍କୁ ତା'ର ସ୍ମୃତି ଆଣି ଦେଉଥାଏ ।

ଜଣେ ପ୍ରାର୍ଥୀଙ୍କୁ ମୁଁ ପଚାରିଲି—"ଭାଇ ନିଜର ଧ୍ୱନି କାନ୍ଥ-ଉପରେ ଲେଖନ୍ତି କାହିଁ ?"

ସେ କହିଲେ—"ଯଦି ମୁଁ ନିର୍ବାଚନରେ ଜିଣିଯାଏ ଓ ଆଉ ପାଞ୍ଚବର୍ଷ ପରେ ଯଦି ମୋତେ ପୁଣି ନିର୍ବାଚନମଣ୍ଡଳୀକୁ ଯିବାର ଦରକାର ପଡ଼େ, ତେବେ ସେହି ଧ୍ୱନିତକ ଦେଖି ଜାଣିପାରିବି ଯେ ମୋର ନିର୍ବାଚନମଣ୍ଡଳୀ କେଉଁଠି ? ଧ୍ୱନିର ସାହାଯ୍ୟବିନା ମୁଁ କିପରି ନିଜର ନିର୍ବାଚନ ମଣ୍ଡଳୀର ସୀମା ଜାଣିପାରିବି ।"

ଏ କଥାଟା ମୋ ମନକୁ ପାଇଲା । କାହିଁକିନା ମୁଁ ଏପରି ବହୁତ ରାଜନୈତିକ ନେତା ଦେଖିଛି, ଯେ କି ଆସେମ୍ବ୍ଲିରେ ପହଞ୍ଚି ଯିବା ପରେ, ନିଜ ନିର୍ବାଚନ ମଣ୍ଡଳୀର ନାମ ବି ଭୁଲିଯାଆନ୍ତି ! ସୁତରାଂ ନିର୍ବାଚନ ଧ୍ୱନିର ଏକମାତ୍ର ଲାଭ ମୋତେ ଏଇଆ ଜଣାଯାଉଛି କି ସେଗୁଡ଼ିକର ସାହାଯ୍ୟରୁ ଘଟଣାସ୍ଥଳୀର ପତ୍ତା ମିଳିଯାଇପାରେ । ସ୍ୱୟଂ ମିର୍ଜାଙ୍କୁ ମୁଁ ଥରେ ତାଙ୍କ ଘରର ପତ୍ତା ପଚାରିବାରୁ, ସେ ଠିକଣାର ବିଶଦ ବିବରଣୀ ଏହିପରି ଭାବରେ ଦେଲେ—"ଆପଣ ଆଗେ

ଗ୍ଲୁରମିନାର ଡାହାଣପଟ ମୋଡ଼ଦେଇ ଯିବେ । କିଛି ଦୂର ବାଦ୍ ଆପଣଙ୍କୁ 'କଂଗ୍ରେସକୁ ଭୋଟ ଦଅନ୍ତୁ' ଧ୍ୱନିର ଲେଖା ଦେଖାଯିବ । ସେହି ଧ୍ୱନି ପାଖ ଗଳିରେ କିଛିଦୂର ଗ୍ଲୁଲିଯିବା ପରେ ଆପଣଙ୍କୁ 'ଜନସଂଘହିଁ ଦାରିଦ୍ର୍ୟ ଦୂର କରିପାରେ'ର ଧ୍ୱନି ଦେଖିବାକୁ ମିଳିବ । ସେହି ଧ୍ୱନିକୁ ପାରହୋଇ ଆପଣ ବଜାରିବାଲା ଗଳିରେ ଗ୍ଲୁଲିଯିବେ । ସେଠି ଆପଣଙ୍କୁ 'ସୋସିଆଲିଷ୍ଟ ପାର୍ଟିକୁ ଭୋଟ ଦଅନ୍ତୁ' ଧ୍ୱନି ଦେଖିବାକୁ ମିଳିବ । ଏ ଧ୍ୱନିକୁ ନଦେଖିଲାପରି ଆପଣ ଆଗେ ବଢ଼ିବେ । ସେଠି ଆପଣଙ୍କୁ ଗୋଟିଏ 'ମଶାଲ୍‌କୁ ଭୋଟ ଦଅନ୍ତୁ' ଧ୍ୱନି ଦେଖିବାକୁ ମିଳିବ । ବାସ୍ ସେହି ହେଉଛି ମୋର ଘର ।

ଆପଣ ବିଶ୍ୱାସ କରନ୍ତୁ, ମୁଁ ମିର୍ଜା ବତେଇଥିବା ବାଟରେ ତାଙ୍କ ଘର ଖୋଜିବାକୁ ବାହାରିବା ସଙ୍ଗେ ସଙ୍ଗେ ତାଙ୍କ ଘର ମିଳିଗଲା । ଦରଜା ଖଡ଼୍‌ଖଡ଼୍ କରିବା ମାତ୍ରେ ସେ ଘରୁ ବାହାରି ଆସିଲେ, କହିଲେ, "ଭଲହେଲା ତୁମେ ଠିକ୍ ସମୟରେ ଆସିଗଲ, କାରଣ ସୋସାଲିଷ୍ଟ-ପାର୍ଟିର ଧ୍ୱନିଥିବା କାନ୍ଥର ଘରବାଲା ଆଜି କାନ୍ଥ ସଫାକରିବାକୁ ଗ୍ଲୁହୁଁଥିଲେ । ମୁଁ ତୁମ ସୁବିଧା ପାଇଁ ବହୁତ ମିନତିକରି ତାଙ୍କୁ ସଫା-କରିବାକୁ ବନ୍ଦ କରେଇଛି । ଭଗବାନ କରନ୍ତୁ ଯଦି ସେ ସଫା କରିଦେଇ ଥାଆନ୍ତେ, ତେବେ ତୁମେ କେବେହେଲେ ମୋ ଘରେ ପହଞ୍ଚି ପାରିନଥାନ୍ତ ।" ଏହାକହି ସେ ସୋସାଲିଷ୍ଟପାର୍ଟିର ଧ୍ୱନିଥିବା କାନ୍ଥର ମାଲିକଙ୍କୁ କହିପଠେଇଲେ ଯେ, ଏବେ ସେ ସଫେଇ କରିପାରନ୍ତି । ତାର ଜବାବ୍‌ରେ ସେହି ଭଦ୍ରଲୋକଟି ମିର୍ଜାଙ୍କୁ କହିପଠେଇଲେ ଯେ ଆସନ୍ତା ରବିବାର ପର୍ଯ୍ୟନ୍ତ ସେ ନିଜ ଘର 'ମଶାଲ'ର ଜଗାରଖା କରନ୍ତୁ । କାରଣ, ସେହିଦିନ କେତେକ ଅତିଥି ସେହି ଧ୍ୱନି ସାହାଯ୍ୟରେ ତାଙ୍କ ଘରେ ପହଞ୍ଚିବାର ଅଛି । ନିର୍ବାଚନ ଧ୍ୱନିର ଏହି ଫାଇଦାଟି ମୋ ମନକୁ ଆସିଛି ।

ନିର୍ବାଚନକର୍ମୀମାନଙ୍କ ଅସୁବିଧା ଏହି ଯେ ସେମାନେ ଲୁଚି ଛପି କାନ୍ଥରେ ଧ୍ୱନି ଲେଖନ୍ତି । ଏଇଥିପାଇଁ ସେମାନଙ୍କ ନଜର ସେହି କାନ୍ଥରେ ଆଗରୁ ଲେଖା ହୋଇଥିବା ଲେଖାପ୍ରତି ପଡ଼ିନାହିଁ । ଏଇଥିପାଇଁ କଣ ନିର୍ବାଚନ ଲେଖାଗୁଡ଼ିକ ସାଙ୍ଗରେ ମିଶି ସେଗୁଡ଼ିକ

ବଡ଼ କଉତୁକିଆ ବନିଯାଏ । ଗୋଟିଏ କାନ୍ଥରେ ନିର୍ବାଚନ ଧ୍ୱନି ଲେଖାଥିଲା 'କଂଗ୍ରେସର ହାତକୁ ମଜବୁତ କର' । ଆଉ ତା' ତଳେ ଲେଖାଥିଲା, 'ହାତଗୋଡ଼ ଭଙ୍ଗାର ସର୍ବୋତ୍କୃଷ୍ଟ ଚିକିତ୍ସା କରାଯାଏ' । ଏହାଥିଲା କୌଣସି ଏକ ସର୍ଜନର ପ୍ରଚାର ପତ୍ର । ଆମକୁ ଜାଗା ଜାଗାରେ ଏହିପରି ବେଖାପିଆ ତଥାପି ସମ୍ବନ୍ଧ ଥିବା ଲେଖା କାନ୍ଥ ଉପରେ ଦେଖାଯାଏ । ଉଦାହରଣ ସ୍ୱରୂପ ନିମ୍ନରେ ଦିଆଯାଇଥିବା ବେଖାପିଆ ଲେଖାର ନମୁନା ଦେଖନ୍ତୁ ।

'କମ୍ୟୁନିଜମ୍ ହିଁ ଆପଣଙ୍କ ସମସ୍ୟାର ସମାଧାନ କରିପାରେ ।'

"ଅନୁକରଣକାରୀ ଓ ଧୋକାବାଜମାନଙ୍କଠାରୁ ଆତ୍ମରକ୍ଷା କରନ୍ତୁ ।"

'ଆପଣଙ୍କ ନିର୍ବାଚନ ମଣ୍ଡଳୀର ପ୍ରାର୍ଥୀକୁ ଜିତାନ୍ତୁ ।'

—ଆଉ 'ମାଙ୍କଡ଼ ଛାପ ଥିବା ବିଡ଼ି ପିଅନ୍ତୁ' ।

ଯଦି ଆପଣ କୌଣସି ଗୁପ୍ତ ରୋଗରେ ଆକ୍ରାନ୍ତ ହୋଇଥାନ୍ତି—

'ତେବେ ସାଇକେଲକୁ ଭୋଟ ଦିଅନ୍ତୁ ।'

ଚକମକିଆ ଧୁଲେଇ ପାଇଁ—'ନିଜ ନିର୍ବାଚନ ମଣ୍ଡଳୀର ପାର୍ଥୀଙ୍କୁ ଭୁଲନ୍ତୁ ନାହିଁ ।'

ଜୀବନରେ ଯଦି ଆପଣ ହତାଶ ଓ ବୀତସ୍ପୃହ ହୋଇପଡ଼ିଥାନ୍ତି, ତେବେ—

'କଂଗ୍ରେସର ହାତ ମଜବୁତ କରନ୍ତୁ ।'

ଦେଶର ଭବିଷ୍ୟତକୁ ଉଜ୍ଜ୍ୱଳତର କରିବା ଲାଗି—

'କବାଡ଼ି ଟୁର୍ଣ୍ଣାମେଣ୍ଟରେ ଭାଗ ନିଅନ୍ତୁ ।'

ଆପଣଙ୍କର ମୂଲ୍ୟବାନ୍ ଭୋଟ୍—

'ଶସ୍ତାଦାମ୍‌ରେ ଆମଠାରୁ ହାସଲ କରନ୍ତୁ ।'

'ସୋସାଲିଷ୍ଟ ପାର୍ଟିକୁ ଭୋଟଦେଇ—ଜନତା ତେଲ୍‌ସମାତ୍ର ବ୍ୟବହାର କରନ୍ତୁ ।'

'ଦେଶରେ ସୋସାଲିଜମ୍ ଆଣିବା ପାଇଁ—ମଞ୍ଜନ୍‌ଫାରୁକ ବ୍ୟବହାର କରନ୍ତୁ ।'

'ଜନସଂଘର ଧ୍ୱନି—ଦୁଇଟି ବା ତିନୋଟି ସନ୍ତାନ ବାସ୍ ।'

ଆପଣ ବିଶ୍ୱାସ କରନ୍ତୁ, ଏହି ବେଖାପିଆ ଲେଖାଗୁଡ଼ା ପଢ଼ିଲେ ମୋତେ ଭାରି ଆନନ୍ଦ ଲାଗେ । ଆଜି ନିଜ କାନ୍ଥରେ ଲେଖାଥିବା ଧ୍ୱନି-ସବୁ ଦେଖି, ହୋଇଥିବା ଦୁଃଖ ଦୂର ହୋଇଯାଏ ।

ମିର୍ଜା ନିର୍ବାଚନ ଧ୍ୱନି ଲେଖିବାର ଘୋର ବିରୋଧୀ । ତାଙ୍କର ଏହି ଅଭିଯୋଗ ଯେ ଏବେ ଏବେ ଲୋକସଭା ନିର୍ବାଚନର ଲେଖାସବୁ କାନ୍ଥରୁ ସଫା ହେଉ ନହେଉଣୁ ବିଧାନ ସଭା ନିର୍ବାଚନ ଲେଖା ପାଇଁ କାନ୍ଥପୋଛା ଆରମ୍ଭ ହୋଇ ଯାଉଛି । ବିଧାନସଭା ନିର୍ବାଚନ ସରୁ ନସରୁଣୁ ମୁନିସିପାଲ୍ ନିର୍ବାଚନ କାନ୍ଥ ଉପରକୁ କୁଦି ପଡୁଛି । ତାଙ୍କର କହିବାର ଉଦ୍ଦେଶ୍ୟ ହେଉଛି ଗଣତନ୍ତ୍ରର ମୂଳଦୁଆ ଯଦି ଏହି ଢଙ୍ଗରେ ଦୃଢ଼ ହୁଏ, ତେବେ ଘରର କାନ୍ଥଗୁଡ଼ିକ ଅତିଶୀଘ୍ର ଦୁର୍ବଳ ହୋଇ ପଡ଼ିବ । ନିର୍ବାଚନ ଧ୍ୱନିର ଗୁରୁଭାର ସମ୍ଭାଳିବାକୁ ତାହା ଅକ୍ଷମ ହୋଇପଡ଼ିବ ।

# ମିର୍ଜାଙ୍କ ସ୍ମରଣେ

(ମିର୍ଜା କ ୟାଦ୍ ମେ)

ମିର୍ଜା ୩୦ ବର୍ଷକାଳ ସରକାରୀ ଚାକିରିରେ ରହିବା ପରେ ପଅରିଦିନ ଅବସର ଗ୍ରହଣ କଲେ । ମୁଁ ତାଙ୍କ ସଙ୍ଗେ ଦେଖାକରିବାକୁ ଗଲାରୁ, ସେ ମୋତେ କୁଣ୍ଢେଇ ପକେଇ କୋହରେ କାନ୍ଦିବାକୁ ଲାଗିଲେ । ମୁଁ କହିଲି, "ମିର୍ଜା ! ଏ କଅଣ କାନ୍ଦିବାର ଅବସର ? ବରଂ ତୁମର ଖୁସି ହେବା ଉଚିତ । ତିରିଶ ବର୍ଷଯାଏ ତୁମେ ଅନ୍ୟ କିଛି କାମ ନକରି, ସରକାରୀ କାମ ଖୁବ୍ ଭଲଭାବରେ ତୁଲାଇ ନେଲ; ତେବେ କାନ୍ଦଣା କାହିଁକି ?"

ସେ କହିଲେ—"ବନ୍ଧୁ ! ତୁମେ ଜଣେ ସରକାରୀ କର୍ମଚାରୀର ମନ ଦରଦ ଜାଣିବ କୁଆଡୁ ? ତୁମକୁ ଏହା କଅଣ ଜଣାନାହିଁ କି ଦୁନିଆରେ ସମସ୍ତେ ମାତ୍ର ଥରେ ମରନ୍ତି କିନ୍ତୁ ସରକାରୀ କର୍ମଚାରୀ ତିନିଥର ମରେ ।"

ମୁଁ ପଚାରିଲି—'କିପରି ?'

ସେ କହିଲେ, "ଯେତେବେଳେ ସେ ସରକାରୀ ଚାକିରିରେ ପଶେ ତାର ପ୍ରଥମ ମୃତ୍ୟୁ ହୁଏ, ଆଉ ଯେତେବେଳେ ସେ ପେନ୍‌ସନ୍ ପାଇଁ ଚାକିରିରୁ ବିଦାୟ ନିଏ ତାର ଦ୍ୱିତୀୟ ମୃତ୍ୟୁ ହୁଏ । ଆଉ ତୃତୀୟଟି ହେଲା ଦୈହିକ ମୃତ୍ୟୁ ।"

ମୁଁ ଦିନେ ତାଙ୍କୁ ପଚାରିଥିଲି —"ଭାଇ ! ଯଦି ତୁମେ କିଛି କାମ କରୁନ, ତେବେ ରେଜିଷ୍ଟର୍‌ରେ ହାଜର ଦସ୍ତଖତ କରିବାର କଷ୍ଟ କରୁଛ କାହିଁକି ?"

ସେ କହିଲେ—"ବନ୍ଧୁ ! କାମ କରିବାରେ ରେଜିଷ୍ଟର୍‌ରେ ଦସ୍ତଖତ କରିବାଟାକୁ ମୁଁ ସବୁଠୁଁ ବଡ଼ କାମ ବୋଲି ବିଚାରେ । ଦୁନିଆରେ ମୋର ସ୍ଥିତିକୁ ପ୍ରମାଣିତ କରିବା ପାଇଁ ମୁଁ କେବଳ ରେଜିଷ୍ଟର୍‌ରେ ଦସ୍ତଖତ କରୁଛି । ନହେଲେ ଇତିହାସର ଏତେବଡ଼ ଧାରାରେ, ଏତେବଡ଼ ବିଶ୍ୱରେ କିଏ ଜାଣିବ ଯେ ମୋ ଭଳି ଏକ ନଗଣ୍ୟ ଲୋକ ବଞ୍ଚିଛି କି ମରିଯାଇଛି । ମୁଁ ତ କେବଳ ବଞ୍ଚିବାର ହାଜିରା ଦେଉଛି ! ସରକାର ମଧ୍ୟ ଏମିତିଆ ଦରମା ଦେଉଛନ୍ତି ଯେ ଜଣେ ସେଥିରେ କେବଳ ଦସ୍ତଖତ କରିବ । ତା' ଠାରୁ ଅଧିକ କିଛି କରିବା ଲାଗି ସରକାର ମୋତେ ଦରମା ଦିଏ ନାହିଁ । ଏବେ ତୁମେ କହିଲ ମୁଁ କଅଣ କରିବ ?"

ରେଜିଷ୍ଟର୍‌ର ହାଜିରା ଦସ୍ତଖତ କରିବା ମାନେ ମିର୍ଜାଙ୍କୁ ଖୁବ୍ ଜୋର୍‌ରେ ଗୁହାରି ତଲବ ଦେଖାଏ । ତେଣୁ ସେ ଏପରି ଏକ ଲୋକର ସନ୍ଧାନରେ ବାହାରନ୍ତି, ଯେ କି ତାଙ୍କୁ ଗୁହା ପିଆଇ ପାରିବ । ୧୨ଟାରେ ସେ ଯେମିତି ନିଜ ସିଟ୍ ପାଖରେ ପହଞ୍ଚନ୍ତି, ଲଞ୍ଚ୍‌ର ଭାବନା ତାଙ୍କ ମୁଣ୍ଡକୁ ଆସିଯାଏ । ଏହାର ଭିତରେ ସେ ଆପଣା ଫାଇଲ୍ ଉପରେ ଜମିଥିବା ଧୂଳିକୁ ଝାଡ଼ି ଦିଅନ୍ତି ଆଉ ସେଗୁଡ଼ିକୁ ଶୁଙ୍ଘି ଶୁଙ୍ଘି ପୁଣି ଯଥାସ୍ଥାନରେ ଥୋଇ ଦିଅନ୍ତି । ମିର୍ଜାଙ୍କ ପାଖରେ ଫାଇଲଗୁଡ଼ିକ ଏତେ ଦୀର୍ଘଦିନ ଧରି ପଡ଼ିରହେ ଯେ ଫାଇଲ୍‌ର ଅସଲ ଗନ୍ଧ କୁଆଡ଼େ ଗାଏବ୍ ହୋଇଯାଏ ଆଉ ସେଠାରେ ମିର୍ଜାଙ୍କ ଗନ୍ଧ ବାହାରିବାକୁ ଲାଗେ ।

ତାଙ୍କ ସାଥୀ ଫାଇଲଗୁଡ଼ାକ ଶୁଙ୍ଘି ଶୁଙ୍ଘି କହି ଦିଅନ୍ତି କେଉଁ ଫାଇଲ ମିର୍ଜାଙ୍କର ଆଉ କେଉଁ ଫାଇଲ ନୁହେଁ ।

ଫାଇଲ୍‌ର ଧୂଳି ଝାଡ଼ିବା ଫୁରସତ୍ ଯେତେବେଳେ ତାଙ୍କୁ ମିଳେ, ସେ କିଛି ସମୟ ପାଇଁ କେବଳ ଏଇଆ ଭାବି ନିଜ ଚୌକି ଉପରେ ବସି ଯାଆନ୍ତି କି, ଏହି କାମରେ ତାଙ୍କ ଚୌକିଟା ସଫା ହୋଇଯିବ ।

ଚୌକିଟା ସଫା ହେବା ଭିତରେ ଲଞ୍ଚ ସମୟ ଆସି ଯାଉଥିଲା ଆଉ ମିର୍ଜା ନିଜ ଟୋପି ଟେବୁଲ ଉପରେ ଥୋଇ, ଲଞ୍ଚ୍ ପାଇଁ ବାହାରି ଯାଉଥିଲେ । ମୁଁ ଯେତେବେଳେ ବି ମିର୍ଜାଙ୍କ ସହ ଦେଖା କରିବାକୁ ଯାଏ, ସେତେବେଳେ ତାଙ୍କର ଏ ଟୋପି ସାଙ୍ଗରେ ଦେଖା ହେଉଥିଲା । ମୁଁ ସମସ୍ତ ସମୟରେ ମିର୍ଜାଙ୍କ ଟୋପି ଠିକ ସେ କାଳେ ରହିଯାଇ-ଥିବେ ବୋଲି ଦେଖୁଥିଲି କିନ୍ତୁ ମୋତେ ସର୍ବଦା ଖାଲି ଟୋପିଟାହିଁ ମିଳୁଥିଲା ।

ମିର୍ଜାଙ୍କ ଲଞ୍ଚ ଦୁନିଆର ସବୁଠାରୁ ଦୀର୍ଘକାଳବ୍ୟାପୀ ହେଉଥିଲା । ମୋର ଭଲଭାବରେ ମନେଥିଲେ ହେଁ, ମିର୍ଜାଙ୍କ ଖାନା ପୁଟୁଲିରେ ଦୁଇଟିରୁ ବେଶି ଚପାତି ନଥାଏ ବରଂ ଅଧିକାଂଶ ସମୟରେ ସେ ନିଜର ବଡ଼ପଣ ବଜାୟ ରଖିବା ଲାଗି, ସେ ଖାଲି ପୁଟୁଳି ନେଇ ଆସୁଥିଲେ ।

ମୁଁ ତାଙ୍କୁ ପଚାରିଲି—"ମିର୍ଜା, ଦୁଇଟି ଚପାତି ଖାଇବା ପାଇଁ ତୁମକୁ ତିନି ଘଣ୍ଟା କାହିଁକି ଲାଗେ ?"

ଏହା ଉପରେ ସେ କହିଲେ—"ଭାଇ ମୁଁ ତ ଦୁଇଟି ଚପାତି ଦୁଇ ମିନିଟ୍‌ରେ ଖାଇଦିଏ କିନ୍ତୁ ତା'ପର ସମୟତକ ମୁଁ ପାକୁଳି କରିଥାଏ । ଶେଷରେ ଖାଦ୍ୟକୁ ହଜମ କରିବା ଲାଗି କିଛି ସମୟ ତ ଦରକାର ।"

ମିର୍ଜା ଲଞ୍ଚରୁ ଫେରିଲା ବେଳକୁ ଗୁରିଟା ବାଜି ଯାଇଥାଏ । ଆଉ ଏ ସମୟଟି ଦପ୍ତରର ଭିତରେ ଭାବବିନିମୟ ପାଇଁ ଉତ୍କୃଷ୍ଟ ସମୟ ଏବଂ ମିର୍ଜାଙ୍କୁ ଘରକୁ ଫେରିବା ପାଇଁ ମଧ୍ୟ ପ୍ରସ୍ତୁତ ହେବାକୁ ପଡ଼ୁଥିଲା । ତାଙ୍କର ନଜର ସବୁବେଳେ ଘଡ଼ି ଉପରେ ଲାଗି ରହିଥାଏ ।

ଦିନର କୌଣସି ସମୟରେ ଯଦି ତାଙ୍କୁ କେହି ସମୟ ପଚାରୁଥି-ଥିଲା, ତେବେ ମିର୍ଜା ନିଜ ଘଡ଼ିକୁ ଚାହିଁ ଖୁବ୍ ଦୃଢ଼ତାର ସହ କହିଲେ—"ଭାଇ, ସମୟ କଣ ପଚାରୁଛ, ଅଫିସରୁ ଛୁଟି ମିଳିବା ପାଇଁ ଏବେ ତ ପୂରା ୪ ଘଣ୍ଟା ୨୫ ମିନିଟ୍ ବାକି ଅଛି ।"

ମିର୍ଜା ସାମୟିକ ଛୁଟି (କାଜୁଆଲ) ନେବାରେ ବଡ଼ ଧୁରନ୍ଧର ଥିଲେ । ଏମିତି ବି ସେ ବରାବର ବେମାର ରହୁଥିଲେ ଆଉ ଏହି କାରଣରୁ ବେମାରୀଟା ତାଙ୍କ ପାଇଁ ବଡ଼ି ବଡ଼ି 'ସାମୟିକ' ବଦଳରେ 'ଚିରସ୍ଥାୟୀ' ହୋଇଯାଇଥିଲା । ଏଥିପାଇଁ ସେ ଏହିସବୁ ବିଷୟରେ ସାମୟିକ ଛୁଟିରୁ ଫାଇଦା ଉଠାଉ ନଥିଲେ । ଥରେ ସେ ଅଫିସକୁ ଏଇଭଳିଆ ଛୁଟି ଦରଖାସ୍ତ ଲେଖି ପଠେଇଥିଲେ—"ହଜୁର, ଅଧମର ଦେହ ଦୈବାତ୍ ଟିକିଏ ଭଲ ଅଛି । ସେହି ହେତୁ ଅଧମ ଜୀବନରେ କିଛି ମଜା ଉଠେଇବାକୁ ଚାହୁଁଛି । ଯଦି ଆଜି ଦିନର ସାମୟିକ ଛୁଟି ମଞ୍ଜୁର କରାଯାଏ, ତେବେ ଏ ଅଧମ ଆପଣମାନଙ୍କ ନିକଟରେ କୃତଜ୍ଞ ରହିବ ।" କିନ୍ତୁ ମିର୍ଜାଙ୍କ ସାମୟିକ ଛୁଟି ମଞ୍ଜୁର ହୁଏନା । ଏହାପରେ ମିର୍ଜା ସାମୟିକ ଛୁଟି ହାସଲ କରିବା ପାଇଁ ଜଣକ ପରେ ଜଣେ ନିଜର ବନ୍ଧୁବାନ୍ଧବଙ୍କୁ ପରଲୋକକୁ ପଠେଇବା ଆରମ୍ଭ କରିଦେଲେ । ଏହି ଚେଷ୍ଟାରେ ସେ ନିଜେ ବାପାଙ୍କୁ ଚାରି ଥର, ମା'ଙ୍କୁ ଦି'ଥର, ଆଈକୁ ଦଶ ଥର ଆଉ ବୁଢ଼ୀମାଆଙ୍କୁ ଷୋହଳଥର ଶହୀଦ କରାଇଥିଲେ । ଅଫିସର ଲୋକେ ବିବ୍ରତ ହେଉଥିଲେ କି ମିର୍ଜାଙ୍କ ଏତେ ଗୁଡ଼ାଏ ପିତା ଓ ଏତେ ଗୁଡ଼ାଏ ମାତା କୁଆଡ଼ୁ ଆସିଲେ । ତା ଜବାବରେ ସେ କହୁଥିଲେ—"ଭାଇ, ମୁଁ ନିଜେ ବାପାମାନଙ୍କୁ ଜନ୍ମ କରୁଛି, ଆଉ ସାମୟିକ ଛୁଟି ନେଲାବେଳେ ସେମାନଙ୍କୁ ମାରି ଦେଉଛି । ଅଫିସର ନିୟମ କାନୁନ୍ ଭିତରେ ଚଳିବା ପାଇଁ କ'ଣ କରିବାକୁ ନପଡ଼େ ।"

ନିଜର ଅସୁସ୍ଥତା ସମୟରେ ମିର୍ଜା ନିୟମିତ ଭାବରେ ଅଫିସକୁ ଆସୁଥିଲେ, କାରଣ ତାଙ୍କର ଧାରଣା ଥିଲା କି, ବେମାରି ପାଇଁ ଛୁଟି ନେଇ ଯଦି ସେ ଘରେ ବସି ରହନ୍ତି, ତେବେ ତାଙ୍କ ଗୃହ ଜଞ୍ଜାଳ ବଢ଼ିଯିବ । ଆଉ ତାଙ୍କ ସ୍ତ୍ରୀ ତାଙ୍କଠାରୁ ପେଣ୍ଡିଂ କାମ ଆଦାୟ କରି ନେବେ । ଥରେ ମିର୍ଜା ନିଜ ଘରୋଇ କାମ ପାଇଁ ଦୁଇମାସ ଛୁଟି ନେଇଥିଲେ କିନ୍ତୁ ଛୁଟିର ଆଠଦିନ ନିକଟରୁ, ଡାକ୍ତର ସାର୍ଟିଫିକେଟ୍ ସହ ଏକ ଦରଖାସ୍ତ ଅଫିସ୍‌ରେ ଯାଇ ପହଞ୍ଚିଲା । ସେଥିରେ କି ଲେଖାଥିଲା, "ହଜୁର, ଅଧମ ଦୁଇମାସ ଛୁଟି କିଛି ଘର କାମ ପାଇଁ ହାସଲ

କରିଥିଲି କିନ୍ତୁ ଏହି ସମୟ ଭିତରେ ଅଧମର ସ୍ୱାସ୍ଥ୍ୟ ବହୁତ ଖରାପ ହୋଇଗଲା । ଡାକ୍ତର ଉପଦେଶ ଦେଇଛନ୍ତି କି, ଅଧମର ପୂର୍ଣ୍ଣ ବିଶ୍ରାମ ନେବା ଉଚିତ; ନଚେତ୍ ଜୀବନ ଚାଲିଯିବାର ଆଶଙ୍କା ରହୁଛି । ଏଣୁ ମୁଁ ପ୍ରାର୍ଥନା କରୁଛି, ଅଧମର ଛୁଟି କ୍ୟାନସଲ କରି, କାର୍ଯ୍ୟରେ ଯୋଗଦେବାକୁ ଅନୁମତି ଦିଆଯାଉ । ଆପଣଙ୍କର ଅବଗତି ନିମନ୍ତେ ଏଥିସହ ଡାକ୍ତର ସାର୍ଟିଫିକେଟ ପେଶ୍ କଲି ।"

ପହିଲା ହେବାମାତ୍ରେ ମିର୍ଜାଙ୍କ ଆଗରୁ ତାଙ୍କ ମହାଜନମାନେ ଅଫିସରେ ଯାଇ ପହଞ୍ଚି ଯାଉଥିଲେ । ସେ ତାଙ୍କ ମହାଜନମାନଙ୍କର ଖୁବ୍ ଖାତିର୍ କରୁଥିଲେ ଏବଂ ତାଙ୍କ ସହ ଏପରି ହସିଖୁସିରେ ବ୍ୟବହାର କରୁଥିଲେ ଯେ ବିଚାରା ସେମାନଙ୍କ ମୁହଁକୁ କରଜା ମାଗିବା କଥା ଆସୁ ନଥିଲା । ସେ ଚିକଣ ଚାକଣ କଥାରେ ସେମାନଙ୍କୁ ଏପରି ଖେଳ କରି ଦଉଥିଲେ ଯେ, ପିଛଲା କରଜାକୁ କେବଳ ଟାଳଟୁଳ କରି ଦେଉ ନଥିଲେ ବରଂ ତାଙ୍କଠାରୁ ନୂଆ କରଜା ହାସଲ କରି ନେଉଥିଲେ । ଏଥିଲାଗି ତାଙ୍କର ଅଧିକାଂଶ ମହାଜନ ତାଙ୍କୁ ଥରେ କରଜା ଦେବାପରେ, ତାଙ୍କଠାରୁ ଲୁଚି ରହିବା ଅଧିକ ଲାଭଦାୟକ ବୋଲି ମନେ କରୁଥିଲେ । ମୁଁ ଏ ଦୃଶ୍ୟ ଦେଖିଛି ଯେ ମିର୍ଜା ରାସ୍ତାକୁ ବାହାରିବାମାତ୍ରେ ତାଙ୍କର ଋଣଦାତାମାନେ ଧଡ଼ାଧଡ଼ ଗଳିକନ୍ଦିରେ ପଶିଯାଉଥିଲେ ଆଉ ଦେଖୁ ଦେଖୁ ରାସ୍ତାଟି ଶୂନଶାନ ହୋଇ-ଯାଉଥିଲା । ଏଥିରୁ ଆପଣ ଅନ୍ଦାଜ କରିପାରନ୍ତି କି ମିର୍ଜାଙ୍କର କରଜ-ଦାତାମାନଙ୍କର ସଂଖ୍ୟା କେତେ ଥିଲା । ମୁଁ ତାଙ୍କୁ କହେ—"ମିର୍ଜା, ଯେବେ ତୁମେ ନିଜର କରଜଦାତାମାନଙ୍କର ଗୋଟିଏ ଗ୍ରେଟକାଟିଆ ନିର୍ବାଚନ ମଣ୍ଡଳୀ ସୃଷ୍ଟି କରିଦେଇ ପାରିବ, ତେବେ ତୁମର ଏମ୍. ଏଲ୍.ଏ. ହେବା ସୁନିଶ୍ଚିତ ।" କିନ୍ତୁ ମିର୍ଜାଙ୍କର କରିବାକାମରେ ଆଦତ ହୋଇଯାଇଥିଲା । ସେ ମୋତେ ଖୁବ୍ ଆଦର କରୁଥିଲେ । ଯେବେ ମୋ ସହ ଦେଖାହୁଏ, ସେ ବେହିସାବର ଭାବରେ ମୋ ପାଇଁ ଖର୍ଚ୍ଚ କରିଯାଉଥିଲେ । ମୁଁ ତାଙ୍କୁ ବୁଝାଏ, "ମିର୍ଜା, ତୁମେ ଗୋଟିଏ କିରାନି; ଏ ବେଗାଫୁଲିଆ ଖର୍ଚ୍ଚ କାହିଁକି କରୁଛ ?"

ସେ କହନ୍ତି, "ହେ ବନ୍ଧୁ ! ହାତ ଚଳାଇ କହୁଛି, ମୁଁ ନିଜ ରୋଜଗାରରୁ ଏପରି ବେଗାଫୁଲିଆ ଖର୍ଚ୍ଚ କରେ ନାହିଁ । ତୁମେ ଚିନ୍ତା

କରନାହିଁ; ମୋ ପକେଟ୍ ଉପରେ କିଛି କୃପା ପଡ଼ୁନାହିଁ । ମୁଁ ତ ଲୋକଙ୍କଠାରୁ କରଜ ଆଣେ ଅଉ ତୁମଲାଗି ଖର୍ଚ୍ଚ କରେ; ଏଥିରେ ମୋର କଣ ଯାଉଛି ? ବିଧାତାଙ୍କର ମୁଁ କେବଳ ନିମିତ୍ତ ମାତ୍ର । ଯାହାର ମଧ୍ୟସ୍ଥତାରେ ଯାହା ଯାହାର ପ୍ରାପ୍ୟ, ସେ ତାହା ପାଇ ଯାଉଛନ୍ତି । ମୋ କାମ ହେଲା ମଧ୍ୟସ୍ଥିର କର୍ତ୍ତବ୍ୟ କରିବା ।”

ମିର୍ଜାଙ୍କର ୨ ତାରିଖଠାରୁ ନିଜ ସାଥୀମାନଙ୍କୁ କରଜ ମାଗିବା ଆରମ୍ଭ ହୋଇଯାଏ । ତାଙ୍କର ବକ୍ତବ୍ୟ ଥିଲା ଯେ, ମାସର ପୂର୍ବାର୍ଦ୍ଧର ତାରିଖଗୁଡ଼ାକ ପହିଲା ତାରିଖରୁ ହିଁ ଶେଷ ହୋଇଯାଏ ଏବଂ ବାକି ସାରା ମାସ ଭିତରେ ମାତ୍ର ଗୋଟିଏ ତାରିଖ ଶୀଘ୍ର ଚାଲିଯାଏ, ସେ ହେଲା ୩୧ ବା ୩୦ ତାରିଖ ।



# ସାହିତ୍ୟିକମାନଙ୍କ ଘରୋଇ ଅବସ୍ଥା

(ବିନା ଛବିରେ)

(ଅଷ୍ଟାବୋଁ କେ ଘରେଲୁ ହାଲତ୍—ବେତସଓ୍ୱୀର)

କିଛିଦିନ ତଳେ ମୋର ମନେହେଲା ଯେ ସାହିତ୍ୟିକମାନଙ୍କର ଘରୋଇ ଅବସ୍ଥା ସଚିତ୍ର ପ୍ରକାଶ ପାଇବା ଉଚିତ । ତଦନୁଯାୟୀ ସାହିତ୍ୟିକମାନଙ୍କର ଘରୋଇ ଅବସ୍ଥା ପ୍ରକାଶ କରାଯାଉଛି କିନ୍ତୁ ବିନା ଛବିରେ । ଆପଣ ପଚାରିବେ, "ବିନା ଛବିରେ କାହିଁକି ?" ତା'ର ଉତ୍ତର ହେଲା—ତୋ ଛବିରେ ମନ ମୋର ନ ଉଠେ ଉଲୁସି । (ତସବୀର ତେରି ଦିଲ୍ ମେରା ବହେଲା ନ ଶକେଗି)

ଇଏ ଭଲ କି କଥା ! ଯେଉଁ ସାହିତ୍ୟିକ ମହୋଦୟ ଅତି ସାଧାରଣ ସ୍ତରଠାରୁ ଆହୁରି ତଳେ ଜୀବନଯାପନ କରୁଛନ୍ତି, ସିଏ ବି ଛବିରେ ସିନେମାର ଏକ ହିରୋପରି ଦେଖାଯାଆନ୍ତି; ଯେମିତିକି ତାଙ୍କର ଦଶ ପନ୍ଦରଟା କୋଠି ଅଛି ଆଉ ପନ୍ଦର କୋଡ଼ିଏଟା ମଟର୍ କାର୍ ଦୁଆରେ ଠିଆ ହେଉଛି ।

ଉଦାହରଣ ସ୍ୱରୂପ ଜଣେ ସାହିତ୍ୟିକ ମହୋଦୟ ଯେଉଁ ଫଟୋଟି ପଠାଇଛନ୍ତି, ତାକୁ ଫଟୋ କହିବା ପରିବର୍ତ୍ତେ ନିଜ ଘରର ବିଜ୍ଞାପନ କହିଲେ ଚଳିବ । ସେ ନିଜ ଗୃହପାଖରେ ଘରର ସବୁ ମୂଲ୍ୟବାନ୍ ଜିନିଷ ଗଦେଇ ଦେଇଛନ୍ତି (ସ୍ତ୍ରୀଙ୍କ ଛଡ଼ା) । ଗୋଟିଏ ପାଖରେ ରେଡ଼ିଓ ଥୁଆ ହୋଇଛି, ଆର ପାଖରେ ରେଫ୍ରିଜରେଟର ଠିଆ ହୋଇଛି, ତୃତୀୟ ପାଖରେ ଲୁଗା ଆଲମାରି ହାତ ବାନ୍ଧି ଠିଆ

ହୋଇଛି (ସବୁଠୁଁ ବଡ଼ କଥା ହେଲା କି ସେ ଆଲମାରିଟାକୁ ମେଲେଇ ଦେଇଛନ୍ତି । ଯେପରିକି ସମସ୍ତେ ଜାଣିପାରିବେ ସେ କେତେ ବଢ଼ିଆ ପୋଷାକ ପିନ୍ଧିଲବାଲି !) ଚତୁର୍ଥ ପାଖରେ ବହି ଆଲମାରିଗୁଡ଼ିକ ଥୁଆ ହୋଇଛି । ଆପଣ ବିଶ୍ୱାସ କରନ୍ତୁ ବା ନକରନ୍ତୁ ମୁଁ ଏ ଫଟୋଟିକୁ ଏନ୍‌ଲାର୍ଜ (ବଡ଼େଇ) କରି ଦେଖିଲି କି ସେହି ଆଲମାରି ଭିତରେ ସେ ସାହିତ୍ୟିକଙ୍କର ବନ୍ଦୀ ହୋଇପାରି ନଥିବା ପାଣ୍ଡୁଲିପିଗୁଡ଼ିକ ଥୁଆ ହୋଇଛି । ପୁନଶ୍ଚ ପଞ୍ଚମ ସ୍ଥାନରେ ଗୋଟିଏ ଚୌକି ଉପରେ ସୁଟ୍ ପିନ୍ଧିଥିବା ନିଜେ ସାହିତ୍ୟିକ ଥୁଆ ହୋଇଚନ୍ତି ଏବଂ ଟେବୁଲ ଉପରେ ନଇଁପଡ଼ି ସେ ଲେଖାଲେଖି କାମରେ ବ୍ୟାପୃତ । ଲେଖାଲେଖି କାମରେ ଲାଗିଥିବା ବେଳେ ଯେତେବେଳେ ଫଟୋ ନିଆଗଲା, ସେତେବେଳେ ତାଙ୍କ କଲମରେ ସ୍ୟାହି ଥିଲା କି ନାହିଁ ବା କାଗଜରେ ଭୁଚ୍ଛାଟାରେ ଗାରଉଥିଲେ, ତାହା ଜାଣି ହେଉନାହିଁ । ଏବେ ସେ ସାହିତ୍ୟିକଙ୍କୁ କିଏ ବୁଝେଇବ ଯେ ଘରେ ସୁଟ୍ ପିନ୍ଧାଯାଏ ନାହିଁ ବରଂ ପାଇଜାମା କାମିଜ୍ ପିନ୍ଧାଯାଏ । ଆଉ ମଧ୍ୟ ଏ ସବୁ ପିନ୍ଧା ନହେଲେ ବି କିଛି ଯାଏଆସେ ନାହିଁ (କାରଣ, ଘରହିଁ ଏସବୁ ପାଇଁ ଉପଯୁକ୍ତ ସ୍ଥାନ) । ଆଉ ମଧ୍ୟ ପଢ଼ା ଟେବୁଲ ପାଖରେ ରେଫ୍ରିଜିରେଟ ଥୋଇବା ଆଉ ତା କଡ଼ରେ ଆଲମାରି ସବୁ ଥୋଇବାର ମାନେ କଅଣ ? ବରଂ ଭଲ ହେବ, ଆପଣ ନିଜ ବହି ସବୁ ରିଫ୍ରିଜରେଟର୍‌ରେ ରଖିଲେ । ଏହା ଫଳରେ ବହି-ଗୁଡ଼ିକ ତାଜା ରହିବ ଆଉ ମଧ୍ୟ ସେଗୁଡିକ ଉଇ ଧରିବ ନାହିଁ ।

ମୋର ଏହି ସବୁ ଫଟୋ ଛାପିବାରେ କିଛି ବାଧା ନଥିଲା କିନ୍ତୁ ସେ ସବୁ ପ୍ରକାଶିତ ହୋଇଥିଲେ, ସାହିତ୍ୟିକ ଓ କବିମାନଙ୍କର କ୍ଷତି ହୋଇଥାଆନ୍ତା । ଉଦାହରଣ ସ୍ୱରୂପ ଯଦି କୌଣସି ସ୍ଥାନୀୟ ଚୋର ଏ ଫଟୋଗୁଡ଼ିକ ଦେଖିନିଏ, ତେବେ ସେ ତାଙ୍କ ଘରେ ଚୋରି କରିବାର ନିଷ୍ଫଳ ଚେଷ୍ଟା କରନ୍ତା ଏବଂ ସେଠାରୁ କିଛି ନପାଇବା ଫଳରେ ସେ ଖବରକାଗଜରେ ପ୍ରତିବାଦ କାଢ଼ିବ ଯେ ଅମୁକ ସାହିତ୍ୟିକଙ୍କର ଦୁଇଟା ରିଫ୍ରିଜରେଟର, ଦୁଇଟି ରେଡ଼ିଓ ସେଟ୍, ଦଶ ପନ୍ଦରଟା ଭଡ଼ି, ଦୁଇଟା ଆଲମାରି ଓ ଅନେକ ମୂଲ୍ୟବାନ୍ ଜିନିଷ ସହିତ ଯେଉଁ ଫଟୋଟି ଅମୁକ ପତ୍ରିକାରେ ଛପାଯାଇଛି, ତାହା ସମ୍ପୂର୍ଣ୍ଣ ଭ୍ରମାତ୍ମକ ଓ ଅମୂଳକ । କାରଣ, ସେଇ ଫଟୋକୁ ଅବଲମ୍ବନକରି

ତାଙ୍କ ଘରକୁ ଫୋଟ କରିବାକୁ ଯାଇ ଦେଖିଲି ଯେ ଉକ୍ତ ମହାଶୟଙ୍କ ଘର ଓ ମୋ ଘରର ଅବସ୍ଥା ମଧ୍ୟରେ କିଛି ପାର୍ଥକ୍ୟ ନାହିଁ । କାରଣ, ତାଙ୍କ ଘରେ ମୁଁ ଯାହା ସବୁ ଦେଖିଲି, ସେହି ସବୁ ଜିନିଷ ମୋର ଘରେ ମଧ୍ୟ ଅଛି । ତେବେ ସେ ସବୁ ଫୋଟକର କି ଲାଭ ? ବରଂ ସେ ସାହିତ୍ୟିକଙ୍କ ଘରେ ଏପରି ଏକ ଛିଣ୍ଡା ଚପଲ ଦେଖିଲି ଯେ ମୋର ହଠାତ୍ ଦୟା ଆସିଲା ଏବଂ ମୁଁ ନିଜ ଚପଲଟି ତାଙ୍କ ଘରେ ଛାଡ଼ିଦେଇ ଆସିଲି । ସୁତରାଂ ଫୋଟଭାଇମାନଙ୍କୁ ସତର୍କ କରାଇ ଦେଉଛି କି, ସେମାନେ ଏପରି ଭ୍ରମାତ୍ମକ ଫଟୋଗୁଡ଼ିକ ଦ୍ୱାରା ପ୍ରଭାବିତ ନ ହୁଅନ୍ତୁ । ବରଂ ଏହା ଭାବନ୍ତୁ—"ଯାହାକିଛି ଦେଖିଲି, ସେ ସବୁ ସପନ, ଯା ସବୁ ଶୁଣିଲି କାହାଣୀ (ଖ୍ୱାବ୍ ଥା ଯୋ କୁଛ୍ କୋ ଦେଖା, ଯୋ ଶୁନା ଆଫଶାନା ଥା) ।

ଏବେ ଆପଣଙ୍କୁ ମୁଁ କଅଣ କହିବି, କିଛି ଦିନ ପୂର୍ବେ ଏକ ଔପନ୍ୟାସିକ ନିଜ ଘରର ଅବସ୍ଥିତିର ସୂଚନା ଦେଇ ସେଇ ଘରର ଏକ ଫଟୋ ପଠାଇଥିଲେ । କଅଣ କହିବି; କି ଚମତ୍କାର ଫଟୋ (ଅର୍ଥାତ୍ ଘରର) । ମୁଁ ଏ ପର୍ଯ୍ୟନ୍ତ ତାକୁ ଛାପି ନଥିଲି । ଏହା ମଧ୍ୟରେ ଜଣେ ସମ୍ମାନନୀୟ ବ୍ୟକ୍ତିଙ୍କ ଚିଠି ମୋତେ ମିଳିଲା । ଯେଉଁଥିରେ ମୋତେ ସତର୍କ କରାଇ ଦେବାଭଳି ସେ ଲେଖିଥିଲେ—"ଯେଉଁ ଔପନ୍ୟାସିକ ମହାଶୟ ନିଜ ଘର ଫଟୋ ଆପଣଙ୍କ ନିକଟକୁ ଛପାଇବା ଲାଗି ପଠାଇଛନ୍ତି, ଦୟାକରି ତାକୁ ଛପାନ୍ତୁ ନାହିଁ । କାରଣ, ଯେଉଁ ଘରର ଫଟୋ ପଠାଇଛନ୍ତି, ତାହା ପ୍ରକୃତରେ ମୋର ଘର ଏବଂ ମୁଁ ତାଙ୍କର ଶ୍ୱଶୁର । ଆଜ୍ଞା, ଏ ତ ବଡ଼ ଜୋର ଜୁଲମ୍ କଥା ! ଔପନ୍ୟାସିକ ମହାଶୟ ପ୍ରଥମେ ତ ମୋ ଘରେ ଘରଜ୍ୱାଇଁ ହୋଇ ରହିଛନ୍ତି ଏବଂ ତା ଉପରେ ମୋ ଘରକୁ ନିଜଘର କହି, ତା ଫଟୋକୁ ପତ୍ରିକାମାନଙ୍କରେ ଛପାଉଛନ୍ତି । ଅବଶ୍ୟ ମୁଁ ମୋର ଘରର ମାଲିକାନା ସ୍ୱତ୍ୱ ଔପନ୍ୟାସିକ ମହାଶୟଙ୍କ ନାମରେ ହସ୍ତାନ୍ତର କରିବାକୁ ବସିଥିଲି କିନ୍ତୁ ତାଙ୍କର ଏସବୁ କାରବାର ଦେଖି ମୋ ମତ ବଦଳାଇ ଦେଇଛି । ଆଜ୍ଞା, ସୀମା ଟପିବା କଥା ହୋଇଗଲା । ସେ ଏବେ ଯେଉଁ ଗ୍ରନ୍ଥାବଳୀଟି ପ୍ରକାଶ କଲେ, ତାକୁ ତ ମୋ ନାମରେ ଉତ୍ସର୍ଗ କରିବାର କଷ୍ଟ ସ୍ୱୀକାର କଲେ ନାହିଁ । ତେବେ ମୁଁ କେଉଁ ଆଶାରେ ମୋ ଘରକୁ

ତାଙ୍କୁ ଉତ୍ସର୍ଗ କରିବ । ସୁତରାଂ ଆପଣଙ୍କୁ ଅନୁରୋଧ, ଆପଣ ମୋ ଘରର ଫଟୋ ପତ୍ରିକାରେ ପ୍ରକାଶ କରନ୍ତୁ ନାହିଁ । ଅନ୍ୟଥା ଆପଣଙ୍କ ନାମରେ ଆଇନ୍ ସଙ୍ଗତ କାର୍ଯ୍ୟାନୁଷ୍ଠାନ କରାଯିବ । ଖର୍ଚ୍ଚ ଓ କ୍ଷତିପୂରଣ ପାଇଁ ଆପଣ ଦାୟୀ ରହିବେ ।

ଆଜ୍ଞା, ଏଇ ସବୁ କାରଣରୁ ମୁଁ 'ସାହିତ୍ୟିକମାନଙ୍କର ଘରୋଇ ଅବସ୍ଥା ବନାମ ଶହରେ' ପ୍ରକାଶ କରିବାକୁ ସ୍ଥିର କରିଛି । ସୁତରାଂ ଏଠାରେ ମୁଁ କେବଳ ସେହି ସାହିତ୍ୟିକମାନଙ୍କ ଘରୋଇ ଅବସ୍ଥା ପ୍ରକାଶ କରୁଛି, ଯେଉଁମାନେ କି ନିଜର ଘରୋଇ ଅବସ୍ଥା ଲେଖିବାବେଳେ 'ଜୀବନ ପାଇଁ ସାହିତ୍ୟ' ଆଦର୍ଶ ନିଜ ଆଗରେ ରଖିଛନ୍ତି ।

**ଶାହିନ୍ ତମନ୍ନା** (ଏହି ଭଦ୍ରବ୍ୟକ୍ତି ଜଣେ ଔପନ୍ୟାସିକ)—

ମହାଶୟ, ମୋର ଘରୋଇ ଅବସ୍ଥା ଏପରି ଯେ ମୋର କୌଣସି ଘର ନାହିଁ । ଯଦି ଆପଣ ନିଜ ଖର୍ଚ୍ଚରେ ଗୋଟିଏ ଘର କରେଇ ଦିଅନ୍ତେ, ତେବେ ଭଗବାନ କଲେ ପାଞ୍ଚ ଛ' ମାସ ଭିତରେ ମୁଁ ଏପରି ଏକ ପରିସ୍ଥିତି ସୃଷ୍ଟି କରି ପାରିବି, ଯାହାକୁ କି 'ଘରୋଇ ଅବସ୍ଥା'ବୋଲି କୁହାଯାଇ ପାରିବ । ସେତେବେଳେ ଯାଇଁ ମୁଁ ମୋ ଘରୋଇ ଅବସ୍ଥା ନିଶ୍ଚୟ ପଠାଇବି । ଯଦି ଆପଣ ଏହି ସର୍ତ୍ତରେ ରାଜି, ତେବେ ଦୟାକରି ମୋ କଥା ଡାକ ଯୋଗେ ଜଣାଇବେ ନାହିଁ, କାରଣ ମୋର ସଠିକ୍ ଠିକଣା କିଛି ନାହିଁ । ଯେଉଁମାନେ ଘରେ ରହନ୍ତି, ତାଙ୍କର ସିନା ଠିକଣା ଅଛି । ଆଉ ଆମ ଦେଶରେ ଡାକ ବ୍ୟବସ୍ଥାର ଏତେ ଉନ୍ନତି ହୋଇନାହିଁ ଯେ ଭ୍ରାମ୍ୟମାଣ, ଗୃହଶୂନ୍ୟ ସାହିତ୍ୟିକମାନଙ୍କର ହାଲ୍ ଠିକଣାର ସନ୍ଧାନ ନେଇ ପାରିବ । ସୁତରାଂ ଆପଣ ଯଦି ଏହି ବିଷୟଟି ନିଜ ପତ୍ରିକାରେ ପ୍ରକାଶ କରିବେ, ତେବେ ମୁଁ ନିଜେ ଆପଣଙ୍କ ସେବାରେ ହାଜର ହେବି ।"

**ସୀନ ଫର୍ସୁର କାନପୁରୀ**—

ମହାଶୟ, ଆପଣ ମୋର ଘରୋଇ ଅବସ୍ଥା ଉପରେ ଏକ ଲେଖା ମାଗିଛନ୍ତି । ଯଦି ଆପଣ ମୋର ଘରୋଇ ଅବସ୍ଥା ନିଜର

କରୁନେବେ ଓ ନିଜର ଘରୋଇ ଅବସ୍ଥାକୁ ମୋତେ ଦେଇଦେବାକୁ ଚାହାନ୍ତି, ତେବେ ମୁଁ ଆନନ୍ଦର ସହ ନିଜର ଘରୋଇ ଅବସ୍ଥାକୁ ଆପଣଙ୍କ ସେବାରେ ପଠାଇବାକୁ ପ୍ରସ୍ତୁତ ଅଛି । କିନ୍ତୁ ପ୍ରଥମେ କିଛି ତ ଜଣାଯିବା ଦରକାର । ଏହା ବିନା ନିଜ ଘରୋଇ ଅବସ୍ଥା ଅନ୍ୟ କୌଣସି ପ୍ରକାରେ ପ୍ରକାଶ କରିବାକୁ ମୁଁ ପ୍ରସ୍ତୁତ ନୁହେଁ, କାରଣ ଏହା ଏକ ଗୋପନୀୟ ବିଷୟ । ବାକି ଘରୋଇ ଅବସ୍ଥା ପାଇଁ ଭଗବାନଙ୍କୁ ଧନ୍ୟବାଦ ।

## ଶାହାଦେ କାଦ୍ରି ରଜ୍ଜାକ ଫାରୁକ, ଆସାମ—

ମହାଶୟ, ଆପଣଙ୍କ ଚିଠିରୁ ଜଣାଗଲା କି ଆପଣ ମୋ ଘରୋଇ ଅବସ୍ଥା ପ୍ରକାଶ କରିବାକୁ ଚାହାଁନ୍ତି । ଭାଇ ! ଆପଣ ତ ଗୋଟାଏ ବଡ଼ ସମସ୍ୟା ଠିଆ କଲେଣି, କାରଣ ମୁଁ ଛ' ମାସ ହେଲା ମୋ ଘରକୁ ଯାଇ ପାରିନି । ଛ'ମାସ ପୂର୍ବେ ଦକ୍ଷିଣ ଭାରତରୁ କବି ସମ୍ମିଳନୀମାନଙ୍କରେ ଯୋଗ ଦେବାକୁ ବାହାରି, ଏବେ ଆସି ଆସାମରେ ପହଞ୍ଚିଛି । ଏହି ହେତୁ ଘରୋଇ ଅବସ୍ଥା ବିଷୟରେ ଏବେ ମୋତେ କିଛି ମାଲୁମ ନାହିଁ, ବରଂ ମୁଁ ନିଜେ ମୋ ସ୍ତ୍ରୀଙ୍କୁ ମୋ ଘରର ଅବସ୍ଥା ବିଷୟରେ ପଚାରି ପଠାଇଛି । ସେ କିନ୍ତୁ ମୋ ଉପରେ ଏତେ ଖପା ଯେ, ମୋତେ କୌଣସି ଉତ୍ତର ଦେବାକୁ ପସନ୍ଦ କରୁନାହାନ୍ତି । ମୋ ସ୍ତ୍ରୀଙ୍କ ପାଖକୁ ଚିଠି ଲେଖନ୍ତୁ ଏବଂ ତାଙ୍କଠାରୁ ମୋ 'ଘରୋଇ ଅବସ୍ଥା' ମଗେଇ ନିଅନ୍ତୁ । କିନ୍ତୁ ତାକୁ ଛପିବା ପୂର୍ବରୁ ମୋତେ ଟିକିଏ ଦେଖାଇ ଦେବେ । ଯଦି ମୋ ସ୍ତ୍ରୀ ଏଣୁତେଣୁ ଲେଖିଦେବେ, ତେବେ ମୋର ସାରା ସାହିତ୍ୟିକ ଜୀବନ ମାଟି ହୋଇଯିବ ।

## ଅବଦୁର୍ ରହିମ ଓ୍ୱଫା, ହାଇଦରାବାଦ—

ମହାଶୟ, ଆପଣ ମୋର 'ଘରୋଇ ଅବସ୍ଥା' ମଗେଇଛନ୍ତି । ମୋର ଘରୋଇ ଅବସ୍ଥା ଉପରେ ହସ୍ତକ୍ଷେପ କରିବାକୁ ଆପଣ କିଏ ? କିନ୍ତୁ ଆପଣ ଯେତେବେଳେ ଚାହାଁଛନ୍ତି, ମୁଁ ବର୍ଣ୍ଣନା କରି ଦେଉଛି । ମୋର ଘରୋଇ ଅବସ୍ଥା ହେଲା—ମୁଁ ରାତି ଦୁଇଟାରେ ଘରେ ପହଞ୍ଚେ ଏବଂ ଠିକ୍ ୨ଟା ୧୫ ମିନିଟ୍‌ରେ ଶୋଇପଡ଼େ । ମୋ ସ୍ତ୍ରୀ ବଡ଼ ଅବାଧ୍ୟ, କାରଣ ମୋର ଘରକୁ ଫେରିବା ଟାକୁ ସେ ଅପେକ୍ଷା କରିବାର କେବେ

ଦେଖିନି । ସକାଳ ନଅଟାରେ ମୁଁ ଉଠେ । ସେତେବେଳକୁ ପିଲାମାନେ ସମସ୍ତେ ସ୍କୁଲକୁ ଚାଲିଯାଇଥାଆନ୍ତି । ଆପଣଙ୍କୁ କଅଣ ବା କହିବି । ଗତ ତିନି ବର୍ଷ ହେଲା ମୁଁ ନିଜ ପିଲାଙ୍କ ଚେହେରା ଦେଖିନି । ବରଂ ମୋତେ ଏହା ବି ଜଣାନାହିଁ, ମୋର କେତୋଟି ପିଲା । ଶୁଣିଚି ଏଗାରଟି ପିଲା; ଭଗବାନଙ୍କୁ ଜଣା ।

ହିସାବକିତାବରେ ମୁଁ ବଡ଼ ଦୁର୍ବଳ (ସବୁ କବିମାନଙ୍କ ପରି) । ଯେହେତୁ ପ୍ରତିବର୍ଷ ଘରେ ପିଲାଙ୍କ ସଂଖ୍ୟା ଗୋଟିଏ ଲେଖାଏଁ ବଢ଼ୁଥାଏ, ସେଥିପାଇଁ ଗୋଟାଏ ଅନ୍ଦାଜିଆ ହିସାବ କରି ରଖିଚି କି ବିବାହ ଦିନ ପରଠାରୁ ହିସାବ କଲେ ଯେତିକି ବର୍ଷ ବାହାରିବ, ପିଲାଙ୍କ ସଂଖ୍ୟା ସେତିକି ବୋଲି ଧରାଯିବ (ଜାଣିଥାନ୍ତୁ ଏଗାର ବର୍ଷ ପୂର୍ବେ ମୋର ବାହାଘର ହୋଇଥିଲା) । ଯଦି କେବେ ଫୁରସତ ମିଳେ, ତେବେ କୌଣସି ଚାର୍ଟାର୍ଡ଼ ଏକାଉଣ୍ଟାଣ୍ଟର ସାହାଯ୍ୟ ନେଇ ପିଲାମାନଙ୍କର ବାଲାନ୍ସସିଟ୍ ପ୍ରସ୍ତୁତ କରିବି । ମୋ ସ୍ତ୍ରୀ ଆଜିପର୍ଯ୍ୟନ୍ତ ମୋ ସହ ସିଧାସଳଖ କେବେ କଥାବାର୍ତ୍ତା କରିନାହାନ୍ତି (ତାଙ୍କ ମୁହଁରେ ନିଶ୍ଚୟ କିଛି ଦୋଷ ଅଛି ) । ଅବଶ୍ୟ ଥରେ ମୁଁ ତାଙ୍କୁ କହିଥିଲି— "ପ୍ରିୟେ, ତୁମେ ସବୁବେଳେ ମୋ ଉପରେ ଖପା ହୋଇ ରହୁଚ କାହିଁକି ? ଯଦି ତୁମ ଜୀବନକାଳ ମଧ୍ୟରେ ମୁଁ ଗୋଟିଏ ବଢ଼ିଆ କୋଠା ତିଆରି କରି ନପାରେ, ତେବେ ତୁମେ ମରିବା ପରେ ଏମିତି ବଢ଼ିଆ ଏକ ସମାଧି ତିଆରି କରିଦେବି ଯେ ତାକୁ ଦେଖି ତାଜମହଲ ବି ଲଜେଇଯିବ ।" ଏହା ଶୁଣି ସେ ବଜାତ୍ କହିଲା, "ମୋର ପ୍ରିୟ କବି; ତୁମେ ଏପରି ସମାଧିଟିଏ କରିଦିଅ କିନ୍ତୁ ସେହି ସମାଧିରେ ଯେଉଁ ଫଳକ ଲଗାଯିବ ସେଥିରେ ଏଇଆ ଲେଖିଦେବ—ଏ ସମାଧି ସ୍ୱର୍ଗତ ସ୍ୱାମୀଙ୍କ ବିଧବାର ଅଟେ ।" ସେହି ଦିନଠାରୁ ମୁଁ ତାଙ୍କ ସହିତ ଆଜିଯାଏ କଥାବାର୍ତ୍ତା କରିନାହିଁ । ଦେଖାଯାଉ କିଏ କାହାର ସମାଧି ତିଆରି କରୁଚି । ଯେହେତୁ ମୁଁ ରାତି ଦୁଇଟାଠାରୁ ସକାଳ ନଅଟା ପର୍ଯ୍ୟନ୍ତ ଶୋଇଥାଏ, ଆଉ ପରଦିନ ରାତି ଦୁଇଟାରେ ଫେରିବା ଲାଗି ଦିନ ସାଢ଼େ ନଅଟାରେ ଘରୁ ବାହାରିଯାଏ, ସେଥିଲାଗି ମୋତେ ଘରର ଅବସ୍ଥା କଥା କିଛି ଜଣାନାହିଁ ।

**ଜନାବ୍ ଧମାକ୍ ପାଣି** (ମୁଣ୍ଡ ଖାଇଲାବାଲା)—

(ସେ କାଣ ଥିବାରୁ ଏପରି ଏକ ଯଥାର୍ଥ ନାମ ବାଛି ନେଇଛନ୍ତି)

ପ୍ରିୟ ବନ୍ଧୁ, ମୋର ଘରେଇ ଅବସ୍ଥା ଏଇଆ ଯେ ବର୍ଷାରେ ମୋ ଘର ଛାତରୁ ଟପ୍‌ଟପ୍ ହୋଇ ପାଣିପଡ଼େ ଆଉ ଗ୍ରୀଷ୍ମ ଦିନେ ଛାତ ଭିତର ଦେଇ ଖରା ଘର ଭିତରକୁ ପଶିଆସେ । ଶୀତ ଦିନେ ହେଲେ, ଘର କାନ୍ଥଗୁଡ଼ିକ ହାଇ ଖୋଲେଇ ହୋଇପଡ଼େ ଏବଂ ଏହି-ପରି ଥଣ୍ଡାରୁ ରକ୍ଷାପାଏ । ସତ କହିଲେ, ମୋ ଘର ହିଁ ଗୃହର ଓ ବଛଣାର କାମ କରେ, ଅର୍ଥାତ୍ ତା'ର ଚଟାଣ ମୋର ବିଛଣା ଓ ତା'ର ଛାତ ମୋର ଗୃହର । ଏଇ ଘରେ ବସି ମୁଁ କବିତା ଚିନ୍ତାକରେ । (ହାୟ, ଦିନେ ହେଲେ ରୋଜଗାର ଚିନ୍ତା କରିଥାଆନ୍ତି କି !) ମୋର କାର୍ଯ୍ୟ ନିର୍ଘଣ୍ଟ ହେଲା—ମୁଁ ଦିନବେଳା ମୋର ଅସଲ ସନ୍ତାନ ହାରା ମନକୁ ଆନନ୍ଦ କରିନଏ । ଆଉ ରାତି ଆସିଲେ ନକଲି ସନ୍ତାନ ଅର୍ଥାତ୍ କବିତା ମୋ ମନକୁ ଆନନ୍ଦ ଦିଏ । ଆପଣ ତ ଜାଣନ୍ତି, ଗୋଟିଏ ଅଫିସରେ ମୁଁ ଜଣେ ଆକାଉଣ୍ଟାଣ୍ଟ ମାତ୍ର । ତେଣୁ ମୋ କବିତା ଉପରେ ବି ହିସାବକିତାବ ଚଳେଉ କରେ । ମୁଁ ଏପର୍ଯ୍ୟନ୍ତ ହଜାରେ ଗଜଲ ରଚନା କରିଛି । ଏହିପରି ପ୍ରତି ଗଜଲ ପାଞ୍ଚପଦ କରି ହେଲେ ପାଞ୍ଚ ହଜାର ପଦ ରଚନା କରିଛି, ଯାହାର ଧାଡ଼ି ସଂଖ୍ୟା ହେଲା ଦଶ ହଜାର । ଛୋଟ ଛନ୍ଦରେ ପାଞ୍ଚ ଶହ ଗଜଲ ଲେଖିଛି, ବଡ଼ ଛନ୍ଦରେ ତିନି ଶହ; ଆଉ ବାକିଗୁଡ଼ିକର ଛନ୍ଦ ଖୋଜିବାରେ ବହୁତ ଚେଷ୍ଟା କଲି କିନ୍ତୁ ପ୍ରତ୍ୟେକ ଥର ମୋତେ ଏପରି ଲାଗିଲା, ଯେପରିକି ସେହି ଛନ୍ଦରେ ମୁଁ ଛନ୍ଦିତ ହୋଇ ପଡ଼ୁଛି । ପଦ ରଚନାରେ ମୋର ଦକ୍ଷତା ହେଲା ଅଧଘଣ୍ଟାରେ ଗୋଟିଏ ଜଣ (ଲୋକେ ମୋ ପଦରଚନା ବେଳେ ଘଡ଼ି ମିଳାଇ ନଅନ୍ତି) । ଯଦି ମୁଁ ଆହୁରି କୋଡ଼ିଏ ବର୍ଷ ବଞ୍ଚେ, ତେବେ ମୁଁ ତିନି ହଜାର ଚାରି ଶହ ପଦ ରଚନା କରି ପକାଇବି, ଦେଖିବ ଦୁନିଆ ମୋର କ'ଣ ଆଲୁଅ କରି ପକାଇବ ।

## ଶଫା ଦବାଖାନଓ୍ୱାଳି, ଗୋରଖପୁର—

ମହାଶୟ, ମୋର ଘରୋଇ ଅବସ୍ଥା ଏଇଆ ହେଲା ଯେ, ମୁଁ ଛଅମାସ ହେଲା ଘରଭଡ଼ା ଦେଇନ, ବର୍ଷେ ହେଲା ବିଜୁଳି ଲାଇନ୍ କଟିଗଲାଣି, ପାଣିପାଇପ୍ ତ ମୂଳରୁ ନଥିଲା । କିନ୍ତୁ ସୌଭାଗ୍ୟର କଥା, ମୋ ଘର ମାଲିକର ପୁଅର କବିତା ଝୁଙ୍କ୍ ଅଛି । ସେ ମୋଠାରୁ କବିତା ଲେଖେଇ ନେଇ, କବି ସମ୍ମିଳନୀରେ ନିଜ ନାଁରେ ପଢ଼ି ଶୁଣାଏ ଆଉ ଖୁବ୍ ବାହାବା ପାଏ । ସେଥିଲାଗି ଘରଭଡ଼ା ମାଗିପାରେ ନାହିଁ । ମୁଁ ମଧ୍ୟ ସେହି କବିତାର ମନଖୋଲା ପ୍ରଶଂସା କରେ । ଯଦି କେବେ ପ୍ରଶଂସା ନକରେ ତ ସାଙ୍ଗେ ସାଙ୍ଗେ ସେ ମୋତେ ଘରୁ ବାହାରି-ଯିବା ପାଇଁ କହେ । ଦେଖାଯାଉ କେତେଦିନ ଯାଏ ମୋ କବିତା ମୋତେ ସେ ଘରେ ରଖାଉଛି । ଏ ସବୁ ଅବସ୍ଥାରେ ମୋର ଘରୋଇ ଅବସ୍ଥା ଆଉ କ'ଣ ହୋଇପାରେ ? ଜୀବନ ଯଦି ମୋ ସହ ଧୋକା ନ ଦିଏ, ତେବେ କେବେ ନା କେବେ ଆପଣଙ୍କ ସହ ଦେଖାହେବ, ନଚେତ୍ ନର୍କରେ ଦେଖାହେବା ସୁନିଶ୍ଚିତ । ବାକି ସବୁ ସାକ୍ଷାତ୍ ହେଲେ (ନର୍କରେ) ।

## ଆଲମ ବେ ଅମଲଚ୍ଛୀ, ଲୁଧିଆନା—

ମହାଶୟ, ଜଣେ କବି ଭାବରେ ମୋର ଘରୋଇ ହାଲ ଜାଣିବାକୁ ଚାହିଁଛନ୍ତି । ତେଣୁ ମୁଁ ଆପଣଙ୍କୁ ଜଣାଇ ଦେଉଛି କି ମୋର କବିତ୍ୱ ସ୍ତର ହେଲା, ମୁଁ ସାରା ଜୀବନରେ ମାତ୍ର ଗୋଟିଏ ପଦ କବିତା ଲେଖିଛି । ମୁଁ ଶୁଣିଛି ଯେ ଥରେ ଗାଲିବ, ମୋମିନ୍‌ଙ୍କର ଗୋଟିଏ ପଦ ଶୁଣି ନିଜର ଗ୍ରନ୍ଥାବଳୀକୁ ହସ୍ତାନ୍ତର କରିବାକୁ ପ୍ରସ୍ତୁତ ହୋଇଯାଇଥିଲେ । ମୁଁ ମଧ୍ୟ ଏହିପରି ଏକ କବିଙ୍କର ସନ୍ଧାନରେ ଅଛି, ଯେ କି ମୋର ଏହି କବିତା ପଦକର ବଦଳରେ ତା'ର ସମସ୍ତ ଗ୍ରନ୍ଥ ହସ୍ତାନ୍ତର କରିବାକୁ ପ୍ରସ୍ତୁତ ହୋଇଯିବ ।

ଏ ସଉଦାଟା ହୋଇଗଲେ ଘର ବଢ଼ିଆ ହୁଅନ୍ତା । ଆଉ ମୁଁ ବି ଏହି କବିତ୍ୱ ବୋଝରୁ ବଞ୍ଚିଯାଆନ୍ତି । ଯଦି ଆପଣଙ୍କ ନଜରରେ ଏପରି କୌଣସି କବି ଥାଆନ୍ତି, ତେବେ ଜଣାଇବେ ।

## ଶାସ୍ତ୍ରିସ୍ତା ହାନସ୍ତା, ଲକ୍ଷ୍ମୀ—

(ଏ ହେଉଛନ୍ତି ଜଣେ ଶ୍ରେଷ୍ଠ ଧରଣର ଔପନ୍ୟାସିକା)

ମହାଶୟ, ଆପଣ ଯେ ମୋତେ ମନେରଖିଚନ୍ତି, ସେଥିଲାଗି ଆପଣଙ୍କୁ ଧନ୍ୟବାଦ ଦେଉଛି । କାରଣ ଏ ଦୁନିଆରେ ମୋତେ ମନେ ରଖିଲାବାଲା ଖୁବ୍ କମ୍ ଅଛନ୍ତି । ଆଉ ଜଣେ ଯିଏକି ମୋତେ ମନେ-ରଖି ପାରିଥାଆନ୍ତା, ସେ ମୋତେ ବିବାହ କରି ସାରିଚନ୍ତି । ଆଉ ସେ କଅଣ ମତେ ମନେରଖି ପାରିବେ ? ଆପଣ ମୋର ଘରର ଅବସ୍ଥା ବିଷୟ ପଚାରିଚନ୍ତି । ମୁଁ ମୋ ଘରଧନ୍ଦାରେ ବହୁତ ବ୍ୟସ୍ତ ଥାଏ । ଅର୍ଥାତ୍ ମୁଁ ସକାଳେ ଗୃହକର୍ତ୍ରୀ ହୋଇ ଘର ଝାଡ଼ାଏ, ରାନ୍ଧୁଣୀ ହୋଇ ଖାଇ ରନ୍ଧାଏ ଆଉ ଗୋଟିଏ ଗୃହର ହୋଇ ବଜାରରୁ ସଉଦା ଅଣାଏ । ଏବେ ଜଳଖିଆ କରୁ ନକରୁଣୁ ପିଲାଙ୍କୁ ସ୍କୁଲ ପଠାଇବା ଚିନ୍ତା ଆସି ଘାରେ । ତେଣୁ ସେ କାମକୁ ମୁଁ ହାମିଦ୍ (ଅର୍ଥାତ୍ ମୋ ସ୍ୱାମୀ) ଙ୍କ ଉପରେ ଛାଡ଼ିଦିଏ । ସେ ବଡ଼ କାମଚୋରର ଲୋକ । ସେଥିଲାଗି ସେ ଯେତେବେଳେ ପିଲାଙ୍କୁ ପୋଷାକ ପିନ୍ଧାନ୍ତି, ମୋତେ ତାଙ୍କ ସାମନାରେ ବସି ନିର୍ଦ୍ଦେଶ ଦେବାପାଇଁ ପଡ଼େ, ଅମୁକ ବୋତାମ ଠିକ କରି ଲଗାଅ, ଫ୍ରକ୍ଟିର ଜୋତା ଉବ୍ବୁକୁ ପିନ୍ଧାଇ ଦିଅନା । ଉବ୍ବୁର କାମିଜ ପପ୍ପୁକୁ ପିନ୍ଧାଅ ନାହିଁ । ପ୍ରତି ପିଲାର ପଢ଼ାବହି ସଙ୍ଗେ ମୋର ନୂଆ ଉପନ୍ୟାସ ବହିରୁ ଖଣ୍ଡେ ଖଣ୍ଡେ ରଖିଦିଅ । ପିଲାଏ ନପଢ଼ିଲେ ବି ଅନ୍ତତଃ ସେମାନଙ୍କ ଶିକ୍ଷକମାନେ ତ ପଢ଼ିବେ । ହମିଦ୍‌ଙ୍କୁ ନିର୍ଦ୍ଦେଶ ଦେଇ ଦେଇ ମୁଁ ଏତେ କ୍ଳାନ୍ତ ହୋଇପଡ଼େ ଯେ ଦମ୍ ନେବାକୁ ବିଛଣାରେ ଗଡ଼ି-ପଡ଼େ । ଅଗତ୍ୟା ନିଦ ଆସିଯାଏ । ସନ୍ଧ୍ୟା ପାଞ୍ଚଟାରୁ ନିଦ ହଠାତ୍ ଭାଙ୍ଗିଯାଏ । ହମିଦ ଛ'ଟାରେ ଅଫିସରୁ ଫେରନ୍ତି । ସେତିକିବେଳେ ମୁଁ ଦ୍ୱାରଦେଶରେ ତାଙ୍କୁ ଅପେକ୍ଷା କରି ଠିଆ ହୋଇଥାଏ । ଏବେ ସେହି ଅପେକ୍ଷା ଲାଗି ମୁଁ ବିରକ୍ତ ହୋଇଗଲଣି । କାମ ଗୋଟିଏ ହେଲେ ଯିନା ମସିହ କରିବ । ଭାବୁଚି ଆଜିକୁ ହମିଦ୍‌ଙ୍କୁ ଅପେକ୍ଷା କରିବା ଲାଗି ଗୃହକର୍ତ୍ରୀକୁ ଠିଆ କରାଇଦେବି । ଏବାଟେ ମୋତେ କିଛି ଫୁରୁସତ୍ ମିଳିଯିବ । ରାତି ହେଲେ ନିଜେ ଡ୍ରଇଂରୁମ୍‌ରେ ବସି ହମିଦଙ୍କୁ ଡକାଏ, ଆଉ ମୋର ଗୋଟିଏ ନୂଆ ଉପନ୍ୟାସ ଲେଖିବା ପାଇଁ

ଡାକ୍ତୁ ଡ଼'କେ । ହାମିଦ୍ ଅଫିସ କାମରେ ଦିନସାରା ବ୍ୟସ୍ତ ହୋଇ-ଥିବାରୁ, ମୁଁ ହ'ଗ୍ଲୁର ଧାଡ଼ିରୁ ବେଶି ଡାକେ ନାହିଁ । ଯେତେବେଳେ ହାମିଦ୍ ଘମେଇ ପଡ଼ନ୍ତି, ମୁଁ ତାଙ୍କ ହାତରୁ ଅଧାଲେଖା ପାଣ୍ଡୁଲିପିଟି ନେଇ ଆସେ । ହ'ଗ୍ଲୁର ଧାଡ଼ି ପଢ଼ିଥିବି କି ନାହିଁ ନିଦ ଆସିଯାଏ । ତା'ପରେ ଶୋଇଯାଏ । ପରଦିନ ମୁଁ ଯେତେବେଳେ ଉଠେ, ଏକ ନୂଆ କର୍ମବ୍ୟସ୍ତ ଦିନ ମୋ ଆଗରେ ଠିଆ ହୋଇଥାଏ ଏବଂ ସେହି କର୍ମଜଞ୍ଜାଳ ପୁଣି ଗ୍ଲେ ।



# କାହାଣୀ-କଳଦାନ୍ତ-ବ୍ୟଥାର

ଆଉଥରେ ମୋ କଳଦାନ୍ତରେ ଏମିତି ହଠାତ୍ ଦରଜ ଆରମ୍ଭ ହେଲା, ଯେପରିକି ଆକାଶରେ ଇନ୍ଦ୍ରଧନୁ ପଡ଼ଯାଉଛି । ଆଉ ସେ ଇନ୍ଦ୍ରଧନୁ ପଡ଼ିବା ମାତ୍ରକେ ମୋତେ ତିନିଭୁବନ ଦେଖେଇ ଦେଲା । ଏମିତି ମୁଁ ଅନେକ ପ୍ରକାର ବ୍ୟଥା ଭୋଗି ଆସିଛି—ପେଟବ୍ୟଥା, ମୁଣ୍ଡବ୍ୟଥା, ଅଣ୍ଟାବ୍ୟଥା, ହୃଦବ୍ୟଥା, ଜାତିର ବ୍ୟଥା, ସନ୍ତାନସନ୍ତତିଙ୍କ ବ୍ୟଥାଠାରୁ ଆରମ୍ଭ କରି ଖାଜାମୀର ଦର୍ଦ୍ଦ (ଖାଜାମୀର ଦର୍ଦ୍ଦ୍ ନାମକ ଜଣେ ପ୍ରବର୍ତ୍ତନ ଉର୍ଦ୍ଦୁ କବିଙ୍କ ନାମର ଅବଲମ୍ବନରେ ଏ ବ୍ୟଙ୍ଗ । ଦର୍ଦ୍ଦ—ବ୍ୟଥା) ପର୍ଯ୍ୟନ୍ତ ମୁଁ ସବୁ ବ୍ୟଥାସହ ପରିଚିତ ଥିଲି କିନ୍ତୁ କଳଦାନ୍ତର ବ୍ୟଥା ମୋ ପକ୍ଷରେ ଥିଲା ସବୁଠାରୁ ନୂତନ । ଉର୍ଦ୍ଦୁ କବିତାରେ ସ୍ଥାନେ ସ୍ଥାନେ ଏପରି ପଦ ମୁଁ ପଢ଼ି ଆସିଛି— ଆଜ୍ କୁଛ ଦର୍ଦ୍ଦ ମେରେ ଦିଲ୍‌ରେ ସେବା ହୋତାହୈ) ଆଜି ମୋ ମନର ବ୍ୟଥା ହେଉଛି ଅଧିକ ।

## କମ୍ମା

(ଦର୍ଦ୍ଦ କା ହଦ୍‌ରେ ଗୁଜରନା ହୈ ଦୱା ହୋଜାନା) ସୀମା ଟପିଗଲେ, ବେଦନା ବ୍ୟାଧିର ଔଷଧ ହୋଇଯାଏ ।

କିନ୍ତୁ ମୋର ଏ ପଦଗୁଡ଼ିକର ସତ୍ୟତା ଉପରେ ବିଶ୍ୱାସ ନଥିଲା, କାରଣ ମୁଁ ଆଜି ପର୍ଯ୍ୟନ୍ତ ବ୍ୟଥା ସୀମା ଟପିଯିବାର ଦେଖି-ନଥିଲି । କିନ୍ତୁ ମହାଶୟ, ମୋର ମନେହେଲା କଳଦାନ୍ତ ବ୍ୟଥା ହେଉଛି ଏକମାତ୍ର ବ୍ୟଥା, ଯାହାର କି ଜବରଦସ୍ତି ସୀମା ଟପେଇଦେବାର ଶକ୍ତି ଅଛି । ମୋର କହିବାର କଥା ହେଉଛି, ଡାହାଣପଟ କଳରେ ଯଦି

ବ୍ୟଥା ହେଉଛି ତେବେ ସେ କେବଳ ସେଇ କଳରେ ସୀମିତ ନରହି ସୀମା ଡେଇଁ ଆପଣଙ୍କ ଗାଲକୁ, କଳ ମାଢ଼ିଠାରୁ ଅନ୍ତତଃ ପାଞ୍ଚ ଛ ଇଞ୍ଚ ଦୂରେଇ ଦେବ । ଆଉ, ଗାଲ ଆଉ କଳମାଢ଼ି ମଝିରେ ଏକ 'ନିରପେକ୍ଷ ସ୍ଥାନ' ସୃଷ୍ଟି କରିଦେବ । ଆପଣଙ୍କୁ ଏମିତି ଜଣାପିବ, ଯେପରିକି ଆପଣଙ୍କ ଗାଲ ଆପଣଙ୍କ ଶରୀରଠାରୁ ବହୁ ଦୂରରେ ଅବସ୍ଥିତ । ଆପଣ ରାସ୍ତାରେ ଯାଉଥିବାବେଳେ ଜଣାପିବ ଯେ ଆପଣଙ୍କ ଗାଲ, ଆପଣଙ୍କ ଆଗେ ଆଗେ ଯାଉଛି ଏବଂ ଆପଣ କେବଳ ତାକୁ ଧରିବାକୁ ଧାଉଁଛନ୍ତି । କେବେକେବେ ଏପରି ବି ଜଣାଯାଏ, ଯୋଡ଼ି ଗାଲ ଆପଣଙ୍କ ସାଙ୍ଗେ ସାଙ୍ଗେ ଅଛି, ସେ ଆପଣଙ୍କର ନୁହେଁ; ଆଉ କାହାର । କଳମାଢ଼ି ଓ ଗାଲ ମଧ୍ୟରେ ଏ 'ବିରହ ଯନ୍ତ୍ରଣା' ବଡ଼ କଷ୍ଟଦାୟକ । କଳମାଢ଼ି ଦରଜର ଲକ୍ଷ୍ୟ ହିଁ ଏଇଆ । ଏପରି ନହେଲେ କଳମାଢ଼ି ଦରଜରେ ଆଉ ମଜା କଅଣ ରହିଲା ?

କଳମାଢ଼ିର ଦରଜ ଯେତେବେଳେ ସୀମା ଟପି ବିଶ୍ୱରେ ପରିବ୍ୟାପ୍ତ ହେବାକୁ ଚେଷ୍ଟାକରେ, ମଣିଷ ସେଇ ବ୍ୟଥାର ବିଶାଳତା ଆଗରେ ସାମାନ୍ୟ ରେଣୁକଣା ପରି ମନେହୁଏ ।

ପ୍ରଥମେ ପ୍ରଥମେ ଯେତେବେଳେ ମୋ ଡାହାଣ ମାଢ଼ି ବ୍ୟଥାର ସୀମା ଟପିଗଲା ଓ ମୁଁ ଡାହାଣଆଡ଼କୁ ଢଳିବାପରି ମନେକଲି, ସେତେବେଳେ ଭାରସାମ୍ୟ ହରେଇବାର ଅନୁଭୂତି ମୋତେ ବିକଳ କରିଦେଲା । ଦର୍ପଣରେ ମୋ ରୂପ ଦେଖିଲେ ଜଣାପଡ଼ିଲା, ଯେପରି ଦର୍ପଣ ଆଗରେ ମୋ ସ୍ଥାନରେ ଭୂତଟିଏ ଠିଆ ହୋଇଛି । ମୁଁ ଡରିଯାଇ ଜଣେ ଦାନ୍ତ ଡାକ୍ତରଙ୍କ ପାଖକୁ ଦଉଡ଼ିଲି । ସେ ମୋତେ ଆଗରୁ ଚିହ୍ନିଥିଲେ କିନ୍ତୁ କଳମାଢ଼ି ବ୍ୟଥା ସହ ଯାଇଥିବାରୁ ଚିହ୍ନିପାରିଲେ ନାହିଁ । ମୁଁ ଅଭିଯୋଗ କଲାରୁ ସେ କହିଲେ, "ଭାଇ ! କଳମାଢ଼ି ଦରଜ ହେବାପରେ ମଣିଷକୁ ଚିହ୍ନିବା ବଡ଼ କଷ୍ଟ ହୋଇପଡ଼େ । ମୋତେ ତ ମୋର ସବୁ ରୋଗୀଙ୍କ ରୂପ ସମାନ ଥିବାପରି ଜଣାପଡ଼େ । କାହାକୁ କେତେ ମୁଁ ଚିହ୍ନିବି ? ଏମିତି ଆପଣଙ୍କ ଆଗରେ ଅନେକଗୁଡ଼ିଏ ପାଉଁରୋଟି ଏକ ସାଙ୍ଗରେ ରଖିଦେଲେ, ଆପଣ କେମିତି ଚିହ୍ନିବେ ଏ ରୋଟି ରାମ ଆଉ ଏ ରୋଟି ଶାମ । କଳମାଢ଼ିର ବ୍ୟଥାର ଗୁଣ ଏପରି

ଯେ ମଣିଷକୁ ଦେଖିଲେ ଜଣାପଡ଼େ ଯେ ତାହାର ରୂପ ପାଉଁରୋଟି ମେସିନ ଗୁଞ୍ଜରେ ତଳାହୋଇ ବାହାରିଚି ।”

ଡାକ୍ତର ବାବୁଙ୍କ ଏଇ ଦୀର୍ଘ ମନୋରମ ବକ୍ତୃତା ପରେ ଯେତେବେଳେ ମୁଁ ମୋର ଆସିବାର ଲକ୍ଷ୍ୟ ଜଣାଇବାକୁ ଚାହିଁଲି, ସେ କହିଲେ, “କାରଣ ଜଣାଇବା ଦରକାର ନାହିଁ; କାହିଁକନା ଆପଣଙ୍କ ଗାଲ ଆପେ ଆପେ କାରଣ ଜଣାଇ ଦଉଚି । ଏହା କହି ସେ ମୋ ମୁହଁ ଖୋଲିବାକୁ ଚାହିଁଲେ । ସେତେବେଳେ ମନେହେଲା, ଯେପରି ମୁହଁରେ ତାଲା ପଡ଼ିଯାଇଚି । ବଡ଼ କଷ୍ଟରେ ସେ ଏପରି ଭାବରେ ମୋ ମୁହଁକୁ କଣେଇ ରଖିଲେ, ଯେପରିକି ମୋ କଳମାଡ଼ି ତାଙ୍କୁ ଦେଖାଯିବ; ଯେଉଁଟି ମୋର ସମସ୍ତ ଅସ୍ତିତ୍ୱ କେନ୍ଦ୍ରୀଭୂତ ହୋଇଥିଲା । ଡାକ୍ତର-ବାବୁ ମୋ ମୁହଁ ଘାପ୍ କରି ବନ୍ଦକରିଦେଇ କହିଲେ, “ବର୍ତ୍ତମାନ ତ ମୁଁ ଏ ଦାନ୍ତ କାଢ଼ିପାରିବିନି । ଆଉ କିଛିଦିନ ଏ ଦାନ୍ତ ସାଙ୍ଗରେ ଚଳିବାକୁ ପଡ଼ିବ ।” ମୁଁ କହିଲି, “ଡାକ୍ତରବାବୁ ! ମୋର ଏ ଦାନ୍ତ ସାଙ୍ଗରେ ଚଳିବାକୁ କିଛି ଆପତ୍ତି ନାହିଁ କିନ୍ତୁ ମୋ ବେକଉପରେ ଯେଉଁ ଦେଢ଼ଟା ମୁହଁ ବାହାରିଚି, ଅନ୍ତତଃ ତାକୁ ସୁଧାରି ନଅନ୍ତୁ । ଏ ବୈଷମ୍ୟ ମୋତେ ବିଶେଷକରି ମୋ ସ୍ତ୍ରୀଙ୍କ ପାଇଁ ଅସହ୍ୟ ।”

ସେ କହିଲେ, “ଭାଇ, ଦେଢ଼ା ମୁହଁରେ ଭାରସାମ୍ୟ ଓ ସୁସମତା ଆଣିବାକୁ ହେଲେ, ତା’ର ଏକମାତ୍ର ଉପାୟ ଅଛି ।”

ମୁଁ କହିଲି, “କଅଣ ସିଏ ?”

ସେ କହିଲେ, “କୌଣସି ପ୍ରକାରେ ଆପଣଙ୍କ ବାଁ କଳ-ଦାନ୍ତରେ ମଧ୍ୟ ବ୍ୟଥା ଭର୍ତ୍ତିକରିବା । ତା ପରେ ଏ ବ୍ୟଥା ବି ମାଡିଯାଇ ଆପଣଙ୍କ ବାଁପଟ ମାଢ଼ିର ସୀମାକୁ ଟପି, ବିଶ୍ୱ ବ୍ରହ୍ମାଣ୍ଡରେ ବ୍ୟାପିଯିବ । ଏହାପରେ ଆପଣଙ୍କ ଦୁଇକଳ ଜ୍ୟାମିତିକ ପ୍ରକାରେ ସମାନ ହୋଇଯିବ । କହିବେ ତ ଆପଣଙ୍କ ବାଁ କଳ ମାଢିରେ ବି ବ୍ୟଥାର ଉଦ୍‌ଘାଟନ କରିଦେବି ।”

ମୁଁ କହିଲି, “ ଡାକ୍ତରବାବୁ ! ଯେତେ କଷ୍ଟ ପଡୁପଛେ, ମୁଁ ଚାହେଁ ଏ ଦାନ୍ତଟା କାଢି ଫିଙ୍ଗିଦିଅନ୍ତୁ । ମୁଁ ଏପରି ଦୁଷ୍ଟୁରି ଦୁଷ୍ଟୁରି

ମରିବା ଗୁହେଁନ । ଟିପୁ ସୁଲତାନ ଭଲ କଥାଟିଏ କହିଥିଲେ, "ସିଂହର ଦିନକର ଜୀବନ, ବିଲୁଆର ଶହେ ଦିନ ବଞ୍ଚିବାଠୁ ଭଲ ।"

ଡାକ୍ତରବାବୁ କହିଲେ, "ଆଜ୍ଞା ଖବରଦାର, ଆପଣଙ୍କ କଳଦାନ୍ତର ବ୍ୟଥା ଏବେ ଦର୍ଶନ ଶାସ୍ତ୍ର ବଖାଣ କଲଣି । ଏ ଅବସ୍ଥା ଖୁବ୍ ଗୁରୁତର । ଆପଣ ନିଜକୁ ସଂଯତ କରନ୍ତୁ, ନଚେତ୍ ଟିପୁ ସୁଲତାନଙ୍କ ଇତିହାସରେ ତ କିଛି ବଦଳିବ ନାହିଁ କିନ୍ତୁ ଆପଣଙ୍କ ଯାହାକିଛି ଭୂଗୋଳ ଅଛି, ତାହା ନଷ୍ଟ ହୋଇଯିବ । ଆଉ ଏହା ବି ଭାବନ୍ତୁ ଯେ ମୁଁ ଯଦି ସବୁ ରୋଗୀଙ୍କ ଦାନ୍ତ ହଠାତ ବାହାର କରିଦିଏ, ତେବେ ମୋର କାରବାର ଚଳିବ କିପରି ? ଗୋଟାଏ ଦାନ୍ତକୁ ମୋତେ ଅନ୍ତତଃ ଶହେଟଙ୍କା ତ ମିଳିବା ଦରକାର । ଆପଣ ଆପଣଙ୍କ ପାଇଁ ଶହେଟଙ୍କା ପର୍ଯ୍ୟନ୍ତ ଚିକିତ୍ସା କରାନ୍ତୁ, ତା'ପରେ ଉଁ ଚୁଁ ନକରି ମୁଁ ଦାନ୍ତଟା ଓପାଡ଼ିଦେବି ।" ଏପରି କହୁ କହୁ ହଠାତ୍ ଡାକ୍ତର ସାହେବଙ୍କ କୃତ୍ରିମ ଦାନ୍ତ ସେଟଟି ବାହାରକୁ ଗ୍ଳିଆସିଲା । ଆଉ ସେ ତାଙ୍କ ପାକୁଆ ପାଟିରେ କହିଲେ, "ମୋ ପରାମର୍ଶ ଫି'ଟା ଦେଇଯାଆନ୍ତୁ ।"

ମୁଁ କହିଲି, "ଆଜ୍ଞା, ଆପଣ କି ପରାମର୍ଶ ଦେଇଚନ୍ତି ଯେ ମୁଁ ଫିସ୍ ଦେବି !" ସେ କହିଲେ—"ମୁଁ ଆପଣଙ୍କୁ ଅତି ଉପାଦେୟ ପରାମର୍ଶ ଦେଇଛି ଯେ କଳଦାନ୍ତର ବିନ୍ଧାକୁ ଦର୍ଶନରୁ ଦୂରରେ ରଖନ୍ତୁ, ନଚେତ୍ ଦାର୍ଶନିକ ପାଲଟିଯିବେ ।"

ମୁଁ ରାଗରେ ଡାକ୍ତରବାବୁଙ୍କ କ୍ଲିନିକ୍‌ରୁ ବାହାରି ଆସିଲି । କେତେ ପାହୁଣ୍ଡ ମାତ୍ର ଯାଇଚି, କଳମାଡ଼ିରେ ବିଜୁଳି ମାରିଲାପରି ଲାଗିଲା । ବିଜୁଳିର ତରଙ୍ଗ କଳଦାନ୍ତରୁ ବାହାରି ସାରାଶରୀର ବ୍ୟାପିଗଲା । ଆଖିରୁ ଜୁଳୁଜୁଳିଆ ପୋକ ବାହାରିଗଲା । ଏମିତି ମନେହେଲା, "ମୋ କଳଦାନ୍ତରେ ଗୋଟାଏ ହରିଣ ଡିଆଁଡେଇଁ ଆରମ୍ଭ କରିଦେଇଚି । ଯେମିତି ମୋ ଦାନ୍ତରେ କେହି ଗୋଟାଏ ତୋପ ଦାଗିଦେଇଛି ବା ଗୋଟାଏ ଚନ୍ଦ୍ରଯାନ ଯାଉଯାଉ ମୋ ଦାନ୍ତ ଉପରେ ଧାରଣାରୁ ଖସି ପଡ଼ିଲା କିମ୍ବା ମୋ ଦାନ୍ତ ଉପରେ ସାମରିକ ବିପ୍ଳବ ଆରମ୍ଭ ହୋଇଗଲା ।" ଘଟଣା ସବୁ ଏତେ ଭିଡ଼ ଥିଲା ଯେ ମୋ କଳଦାନ୍ତରେ

କଣ ହେଉଛି ବା ନହେଉଛି, ତାହା ଜାଣିବା ମୋ ପକ୍ଷରେ କଷ୍ଟ ହୋଇପଡ଼ିଲା । ଏପରି ମନେ ହେଉଥିଲା, ଯେପରି ମୁଁ ନିଜେ ତାଙ୍କଠୁ ଉଲଟା ପର୍ଯ୍ୟନ୍ତ କଲଦାନ୍ତ ହୋଇଯାଇଛି ।

ମୁଁ ବ୍ୟଥାର ଏହି ହଠାତ୍ ଆକ୍ରମଣକୁ ସମ୍ଭାଳିନେବା ପାଇଁ ଗୋଟାଏ ବିଜୁଳି ଖୁଣ୍ଟକୁ ଭରାଦେଇ ଠିଆ ହୋଇଗଲି ଆଉ ମୋ ଆଖିକୁ ସବୁ ଅନ୍ଧାର ଦେଖାଗଲା । ମୋତେ ଲାଗିଲା, ଯେପରି ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡ ଗୋଟାଏ କଲଦାନ୍ତ ହୋଇଯାଇଛି । କଲଦାନ୍ତ ଛଡ଼ା ଜଗତରେ ଆଉ କିଛି ନାହିଁ । ସବୁ ଜିନିଷ କଲଦାନ୍ତରୁ ଆରମ୍ଭ ହୁଏ ଏବଂ କଲଦାନ୍ତରେ ହିଁ ଶେଷ ହୋଇଯାଏ । ସୃଷ୍ଟି ପୂର୍ବରୁ କଲଦାନ୍ତ ଥିଲା, ସୃଷ୍ଟି ପରେ ମଧ୍ୟ ଅଛି । ପ୍ରଥମେ କଲଦାନ୍ତ, ଶେଷରେ ବି କଲଦାନ୍ତ । ହଠାତ୍ ମୋତେ ଜଣାଗଲା, ମୋ ମୁହଁରେ ସୂର୍ଯ୍ୟ ଭର୍ତ୍ତି ହୋଇଯାଇଛି ଆଉ ମୁଁ ତାକୁ ଚୋବେଇ ଚୋବେଇ ଖାଉଛି । ମନ ହେଲା, ସୂର୍ଯ୍ୟକୁ ଚୋବେଇ ଟିକିଟିକି କରି, ସୂର୍ଯ୍ୟଙ୍କର ଏ ଖଣ୍ଡକୁ ଲୋକଙ୍କୁ ବାଣ୍ଟି ଦେଇ କହିବି, "ଭାଇମାନେ ଏଥିରେ ନିଜ ନିଜ ଘରକୁ ଆଲୁଅ କର । ପ୍ରତ୍ୟେକ ଲୋକର ଗୋଟାଏ ଗୋଟାଏ ସୂର୍ଯ୍ୟ ହେବା ଦରକାର । ପ୍ରତ୍ୟେକର ଅଲଗା ଅଲଗା ସକାଳ ହେବା ଉଚିତ । ଏତେ ବଡ଼ ବିଶ୍ୱକୁ ଗୋଟାଏ ସୂର୍ଯ୍ୟର ଅଧୀନ କରିଦେବା ଉଚିତ ନୁହେଁ । ଆସ, ଆମେ ସମସ୍ତେ ମିଶି ସୂର୍ଯ୍ୟକୁ ବାଣ୍ଟିନେବା ଆଉ ଏହାର ଖଣ୍ଡକୁ ପକେଟରେ ରଖିନେବା, ଯେପରିକି ତାହା ସନନ୍ଦ ହୋଇ ରହିବ ଓ ଦରକାର ବେଳେ କର୍ମରେ ଆସିବ ।

କଲଦାନ୍ତ ବ୍ୟଥାର ଏପରି ଏକ ଗୁଣ ଯେ, ଏ ବ୍ୟଥା କିସ୍ତି ଦ୍ୱାରା ଆସେ ଅର୍ଥାତ୍ ବ୍ୟଥାର ଗୋଟାଏ ଢେଉ ଯାଏ ତ ଆଉ ଏକ ଢେଉ ଆସେ । ବ୍ୟଥାର ପ୍ରଥମ ଢେଉ ଚାଲିଗଲା ପରେ, ମୁଁ ଏକ ଅପୂର୍ବ ଅବସ୍ଥାର କଲି ଯେ ବାହାର ପ୍ରତ୍ୟେକ ଢେଉ ସାଙ୍ଗରେ ମୋ ଭିତରେ ଅଧୁନିକ କବି ହୋଇଯିବାର ଏକ ଶକ୍ତିଶାଳୀ ପ୍ରବୃତ୍ତି ସୃଷ୍ଟି ହେଉଛି । ଦେବଦୂତସୁଲଭ ଏ ଅବସ୍ଥାର କେବଳ କଲଦାନ୍ତ ବ୍ୟଥାରେ ସମ୍ଭବ ହୁଏ । ହଠାତ୍ ମୋତେ ଏଇ ରହସ୍ୟ ଜଣାପଡ଼ିଲା ଯେ ଆଧୁନିକ କବିତା ପ୍ରକୃତରେ କଲଦାନ୍ତ ବ୍ୟଥାର ହିଁ କବିତା; ଯେଉଁଥିରେ ମଣିଷର ସବୁ

ଦୁଃଖ କେନ୍ଦ୍ରୀଭୂତ ହୁଏ ଏବଂ ଏହା ସୂର୍ଯ୍ୟକୁ ଗ୍ରାସିବେଇ ଖାଇଯିବାର ଅବସ୍ଥାରେ ପହଞ୍ଚିଯାଏ । ମୋତେ ଏପର୍ଯ୍ୟନ୍ତ ଆଶ୍ଚର୍ଯ୍ୟ ଲାଗୁଥିଲା ଯେ ଆମର ଅନେକ ଆଧୁନିକ କବି ଏପରି କଷ୍ଟଦାୟକ ଓ ଦୁଃଖପୂର୍ଣ୍ଣ କଳ୍ପନାକୁ କିପରି ଏତେ ସହଜ ଓ ସାବଲୀଳ ଭାବରେ ନିଜ କବିତାରେ ପ୍ରକାଶ କରନ୍ତି । ବର୍ତ୍ତମାନ କଲଦାନ୍ତ ବାନ୍ଧି ଭୋଗିବା ପରେ ଜଣାଗଲା ଯେ ଇଏତ ବଡ଼ ସହଜ କଥା । ଆଧୁନିକ କବି ହେବାକୁ ହେଲେ, ପ୍ରଥମେ ନିଜ କଲଦାନ୍ତ ବାନ୍ଧି ସୃଷ୍ଟି କରିଅ ଆଉ ଦେଖ – "ଶୂନ୍ୟରୁ କିପରି ଆସେ କଳ୍ପନା ତୋଡ଼ ।"

ବିଶ୍ୱାସ କରନ୍ତୁ; ବ୍ୟଥାର ପ୍ରଥମ ଚୋଟରେ ହିଁ ମୁଁ କବି ହୋଇଯିବାପାଇଁ ସ୍ଥିର କରିଥିଲି ଓ ଭାବିଥିଲି, ଦ୍ୱିତୀୟ ତୋଡ଼ରେ ବୁଢ଼ା ଏକ ଚମତ୍କାର କବିତାଟିଏ ତୋଳି ଆଣିବି । କିନ୍ତୁ ବନ୍ଧାର ପ୍ରଥମ ଓ ଦ୍ୱିତୀୟ ତୋଡ଼ ମଧ୍ୟରେ ଯେଉଁ ବିରାମ ଥାଏ, ତାହା ମଣିଷକୁ ତାର ଉଡ଼ନ୍ତା-କଳ୍ପନାରୁ ପୁଣି ତଳକୁ ଭିଡ଼ିଆଣେ । ମୁଁ ଭାବିଲି, ମୋ ପାଖରେ ତ କୌଣସି କବିପଦବୀ ନାହିଁ । ତେବେ କବିତା ଯୋଡ଼ି ଲାଭ କଅଣ ?

ଛାଡ଼ନ୍ତୁ ଆଜ୍ଞା, ମୁଁ ଏହିପରି ବନ୍ଧାର ତୋଡ଼ କାଟି କାଟି ଘରେ ପହଞ୍ଚିଲି । କଣ ହେଲା କେଜାଣି, ଘରର ଅବସ୍ଥା ମଧ୍ୟ ବଦଳି ଯାଇଥିଲା । ଯୋଉପିଲା ମୋତେ ଦେଖିବା ମାତ୍ରେ କୁଣ୍ଢେଇ ପକାଉଥିଲା, ସେ ମୋତେ ଦେଖିବା ମାତ୍ରେ ବୁଲିପଡ଼ି ପଳେଇଲା । ଯୋଉ ସ୍ତ୍ରୀ ମୁଁ ଘରେ ପାଦ-ଦେବା ମାତ୍ରେ କିଛି ନା କିଛି ସମସ୍ୟା ଆଣି ଥୋଉଥିଲା, ସେ ମୋତେ ଦେଖି ଚୁପ୍‌ଚାପ୍ ରୋଷେଇ ଘରକୁ ପଳେଇଲା । ମୁଁ ଘରର ଏ ପରିବର୍ତ୍ତିତ ଅବସ୍ଥା ବୁଝିପାରିଲି ନାହିଁ; ବହୁ ସମୟ ପର୍ଯ୍ୟନ୍ତ କେହି ମୋର ଅବସ୍ଥା ବିଷୟ ନପଚାରିବାରୁ, ମୁଁ ରାଗିକରି କହିଲି, "ଏ ଘରେ କଅଣ ସମସ୍ତଙ୍କୁ ସାପ ଦଂଶିଲା, କଥା କଅଣ ?"

ମୋର ଏ ପ୍ରଶ୍ନ ଶୁଣି ସ୍ତ୍ରୀ କହିଲା, "ମୋର ତୁମ ପ୍ରତି ସବୁବେଳେ ଏଇ ଅଭିଯୋଗ ଯେ ଅଫିସରେ ତୁମେ ଅଫିସରଙ୍କ ଗାଳି ଶୁଣୁଚ ଆଉ ଆମ ଉପରେ ରାଗ ଶୁଝୁଉଚ । ତୁମେ ତ ଘରେ ପହଞ୍ଚୁ ପହଞ୍ଚୁ ଜାଣିଯାଇଥିଲି ଯେ ଆଜି ତୁମ ମିଜାଜ୍ ଭଲ ନାହିଁ । ସେଇଥି-

ପାଇଁ ତ ତୁମେ ଗାଲ ଫୁଲେଇ ଓ କାନ୍ଦକାନ୍ଦ ହୋଇ ପହଞ୍ଚିଚ। ଏବେ ତୁମ ଖବର ପଚାରିବ ବା କେମିତି ? ତୁମେ ତ ଏ ଅବସ୍ଥାରେ କାମୁଡ଼ ଗୋଡ଼ାଅ। ମୁଁ ଭାବୁଚ, ଆଜି ତୁମ ଅଫିସର ତୁମକୁ ବହୁତ ଗାଳି ଦେଇଚନ୍ତି। ଦେଖ ତ, ତୁମ ଗାଲ କେତେ ଫୁଲିଯାଇଚି। ଏତେ ଗାଳି ତ ଆଗରୁ କେବେ ଖାଇନଥିଲ ?”

ମୁଁ ବ୍ୟାକୁଳ ହୋଇ କହିଲି, “ଆରେ ହଣ୍ଡି, ତୋର ତ ସବୁବେଳେ ଓଲଟା ଯୁକ୍ତି କରିବାର ଅଭ୍ୟାସ। ମୁଁ କଲଦାନ୍ତ ବନ୍ଧାରେ ମରୁଚି ଆଉ ତତେ ଏଥିରେ ଅଫିସରର ଗାଳି ଦେଖା-ଯାଉଛି ?”

ମୋର ଏସବୁ କଥା ଶୁଣିବା ମାତ୍ରେ ମୋ ପରିବାରର ଲୋକେ ଖୁବ ଖୁସି ହୋଇଗଲେ। ପିଲାମାନେ ଦୌଡ଼ିଆସି ମୋତେ କୁଣ୍ଢେଇ ପକେଇଲେ ଆଉ କହିଲେ, “ଯଦି ସତରେ ଆପଣଙ୍କ କଲଦାନ୍ତ ଦରଜ, ତେବେ ତ ଇଏ ଖୁବ୍ ଖୁସି କଥା। ନହେଲେ ଆମେ ତ ଭାବିଥିଲୁ, ଆଜି ବି ଆପଣ ଅଫିସରୁ ଗାଳି ଶୁଣି ଆସିଚନ୍ତି ଆଉ କିଛି ସମୟ ପରେ ଆମ ଉପରେ ମାଡ଼ ଚାଲିବ।”

କଲଦାନ୍ତ ବନ୍ଧାରେ ମଣିଷ ଅଯଥା ଗର୍ବିତ ଜଣାପଡ଼େ। ତାହାଣ କଲଦାନ୍ତ ବନ୍ଧା ସମୟରେ ମୋର ଅର୍ଦ୍ଧେକ ବନ୍ଧୁ ମୋଠାରୁ ଅଲଗା ହୋଇଗଲେ, କାରଣ ସେତେବେଳର ଚେହେରାରୁ ସେମାନଙ୍କୁ ମୁଁ ମୋର ଖୁବ୍ ଗର୍ବୀ ହୋଇଯାଇଥିବା ପରି ଦେଖାଗଲି। ଠାଏ ଠାଏ ମୋର ଗର୍ବ ବିଷୟରେ ଚର୍ଚ୍ଚା ହେଲା ଯେ, “ଆରେ ଭାଇ, ଯେବେଠୁ ଅଫିସରେ ତା’ର ପଦୋନ୍ନତି ହେଲାଣି, ସେବେଠୁ ସେ ମୁହଁ ଫୁଲେଇ କରି ରଖିଚି। କାହାକୁ ଖୋଲା ମନରେ କଥାବାର୍ତ୍ତା କରୁନି ବରଂ କୁହ ଟେଲିଗ୍ରାମ ଭାଷାରେ କଥା କହୁଚି। ତାହାଣ ଗାଲରେ ଏତେ ଗର୍ବ ଆସିଚି ଯେ ଇଏ ସର୍ବଦା ଦୁଇ ତିନ ଇଞ୍ଚ ଫୁଲି ରହୁଚି।

ଦୈବ ଯୋଗକୁ ମୋର ପଦୋନ୍ନତି ଓ କଲଦାନ୍ତ ବନ୍ଧା, ଦ’ଟାଯାକ ଏକା ସାଙ୍ଗରେ ହୋଇଥିଲା। ନହେଲେ ଏ ଗର୍ବ କିଏ, ମୁଁ

କିଏ ? ପଛରେ ଯେତେବେଳେ ବାଁ କଡ଼ ଦାନ୍ତମୂଳରେ ବିନ୍ଧା ଆରମ୍ଭ ହେଲା, ମୋର ବାକି ଅଧିକ ବନ୍ଧୁ ବି ମୋତେ ପରିତ୍ୟାଗ କଲେ । ନା ଦାନ୍ତ ରହିଲା, ନା ବନ୍ଧୁ ରହିଲେ । ଏବେ କାହାକୁ ବା ବୁଝେଇବି ଯେ ଭାଇ, ସବୁ ଦୋଷ କଳଦାନ୍ତ ବିନ୍ଧାର । ମୁଁ ତ ପ୍ରଥମରୁ ନିସ୍ପୃହ । ଜୀବନରେ ଥରେ ମାତ୍ର ମୁଁ ଗର୍ବ ପ୍ରକାଶ କରିଥିଲି, ଯେତେବେଳେ ମୁଁ ବାହାଘରବେଳେ ଘୋଡ଼ୀ ଉପରେ ବସି କନ୍ୟାଘରକୁ ଅର୍ଥାତ୍ ବର୍ତ୍ତମାନର ସ୍ତ୍ରୀର ଘରକୁ ଯାଇଥିଲି, ଆଉ ସେ ଗର୍ବର ଯେଉଁ ଫଳ ହେଲା, ତାହା ମୋ ଛ'ଟି ସନ୍ତାନ ରୂପରେ ଜଗତରେ ଜଣା । ସେ ଗର୍ବ ଏମିତିଭାବରେ ଭାଙ୍ଗିଲା ଯେ ଏବେ ମୋତେ 'ଗର୍ବ'ର ଅର୍ଥ ଅଭିଧାନରୁ ଖୋଜିବାକୁ ପଡ଼ୁଛି କିନ୍ତୁ କଅଣ କରିବି, ଏଇ କଳଧାନ୍ତ ବିନ୍ଧାରୁ ମୁଁ ସବୁଲୋକଙ୍କ ଆଗରେ ଗୋଟିଏ ଗର୍ବୀଲୋକ ଭାବରେ ପରିଚିତ ହୋଇଯାଇଛି ।

ମୋ ଉପରେ ଆଜି ଏକ ଜୁଲମ ହୋଇଥିଲା । କେବଳ ମୁଁ ହିଁ କଳଦାନ୍ତ ବିନ୍ଧା ହେତୁ ନଥିଲି କିନ୍ତୁ, ଭଗବାନ ମୋ ଅଫିସରଙ୍କୁ ମଧ୍ୟ ଏଇ ଅପୂର୍ବ ଅଭିଜ୍ଞତା ଦେଇଥିଲେ । ଆଉ ଆପଣ ତ ଜାଣନ୍ତି, କଳଦାନ୍ତ ବିନ୍ଧୁଥିବା ଦୁଇଜଣ ଲୋକ କୌଣସି କଥାରେ ଏକମତ ହୁଅନ୍ତି ନାହିଁ, କାରଣ କଳଦାନ୍ତ ବିନ୍ଧାରେ ମଣିଷ ସବୁ ଜିନିଷକୁ ତଳେଇ ଦେଖିବା ମନୋବୃତ୍ତିର ଶିକାର ହୋଇପଡ଼େ । ଆଉ ନିଜେ ନିଜର ଐକାନ୍ତିକତା ଭାବରେ ବନ୍ଦୀ ହୋଇ, ନିଜ ସାମର୍ଥ୍ୟ ମୁତାବକ କଳଦାନ୍ତର ବିନ୍ଧାକୁ ସମ୍ଭାଳେ । ଫଳରେ 'ଚିଠି ପଠାଇବାରେ ଦୁର୍ବିପାକ ସୃଷ୍ଟି ହୁଏ । ଅନେକ ସମୟରେ ଏପରି ହୁଏ ଯେ ମୁଁ ତାଙ୍କ ପାଖକୁ କୌଣସି ପ୍ରସ୍ତାବ ଲେଖି ପଠାଇଲେ, ସେ ତାକୁ ପ୍ରତ୍ୟାଖ୍ୟାନ କରି ଦିଅନ୍ତି । ସେ କିଛି ଆଦେଶ ମୋ ପାଖକୁ ଲେଖିଦେଲେ, ମୁଁ ସେଥିରେ ଜଟିଳତା ପୂରେଇ ଦିଏ । 'ଚିଠି ପଠାଇବାର ଏଇ ବିପଦ' ଏପରି ଅବସ୍ଥାରେ ପହଞ୍ଚିଗଲା ଯେ ଆମ ଦୁଇଜଣଙ୍କ ମଧ୍ୟରେ ସରକାରୀ ଆଦବକାଇଦା ବଦଳରେ ଝଗଡ଼ା ଆରମ୍ଭ ହୋଇଗଲା । ଏ ଭୁଲ ବୁଝାମଣା ଆହୁରି ବି ବଢ଼ିଥାଆନ୍ତା କିନ୍ତୁ ମୁଁ ଦିନେ ଅଫିସରଙ୍କ କୋଠରୀକୁ ହଠାତ୍ ପଶିଯାଇ ଦେଖିଲି, ସେ ଆପଣା ଗାଲ ଧରି ବସିଛନ୍ତି । ମୁଁ ପଚାରିଲି, "ଆପଣଙ୍କ କଳଦାନ୍ତରେ କଷ୍ଟ ହେଉଛି କି ?"

ସେ କହିଲେ, "ହଁ ବହୁତ ବଢ଼ିଛି ।"

ଏଥିରେ ମୁଁ ନିଜ ଗାଲ ଧରି କହିଲି, "ଏଠି ବି ସେଇ ଅବସ୍ଥା ।"

ଏହାପରେ ମୁଁ ବୁଝେଇଲି, "ପ୍ରକୃତରେ ଆମ ଦୁହିଁଙ୍କ ମଧ୍ୟରେ ଥିବା ବିରୋଧର କାରଣ, ଆମ କଲଦାନ୍ତ । ଆମ ଦୁହିଁଙ୍କ କଲଦାନ୍ତରେ ଏକ ସମୟରେ ଯନ୍ତ୍ରଣା ହେଲେ, ତାର ଫଳ ଆମ ବିରୋଧ ମତାମତ ରୂପେ ପ୍ରକାଶ ପାଏ । ଏଇ ସହଜ କଥା ମୋ ଅଫିସର ବୁଝିଗଲେ । ସେତେବେଳ ପର୍ଯ୍ୟନ୍ତ ତାଙ୍କର ଜ୍ଞାନଦାନ୍ତ ପଡ଼ିଯିବା ଅବସ୍ଥାରେ ଥିଲା ।

ପରେ ଆମେ ଦୁଇଜଣ ଏକମତ ହୋଇ ଏକ ଚୁକ୍ତି କଲୁ, ଯେବେ ମୁଁ କୌଣସି ଫାଇଲରେ କୌଣସି ପ୍ରସ୍ତାବ ଦିଏ ତେବେ ଏଇ ପ୍ରସ୍ତାବ ତଳେ ଦସ୍ତଖତ କଲାପରେ ଗ୍ଳେଟ ଅକ୍ଷରରେ 'କଲଦାନ୍ତ ଯନ୍ତ୍ରଣା' ଲେଖି ଦେଉଥିଲି । ସେ ଫାଇଲ ଦେଖି ବୁଝିଯାଉଥିଲେ ଯେ, ଏ ପ୍ରସ୍ତାବ ଦାନ୍ତଯନ୍ତ୍ରଣା ବେଳେ ଲେଖାଯାଇଛି । ଯଦି ସେ ପ୍ରସ୍ତାବକୁ ସେ ପ୍ରତ୍ୟାଖ୍ୟାନ କରନ୍ତି, ତେବେ ସେ ମଧ୍ୟ ଦସ୍ତଖତ କଲାପରେ ତଳେ ଗ୍ଳେଟ ଅକ୍ଷରରେ 'କଲଦାନ୍ତ ଯନ୍ତ୍ରଣା' ବୋଲି ଲେଖି ଦେଉଥିଲେ । କିଛିଦିନ ପରେ ସେ ଏପରି ଅଭ୍ୟସ୍ତ ହୋଇଗଲେ ଯେ ଯେବେବି କୌଣସି ଫାଇଲ ତାଙ୍କ ଆଗକୁ ଆସେ, ତା ଉପରେ ସେ ଲେଖିଦିଅନ୍ତି, 'କଲଦାନ୍ତ ଦରଜ, ପରେ ପେଶ୍ କର ।" ଏହିପରି ଅଫିସରେ ଦୁଇପ୍ରକାର ଫାଇଲ୍ ହୋଇଗଲା । ଅର୍ଥାତ୍ କଲଦାନ୍ତ ଯନ୍ତ୍ରଣା ପୂର୍ବର ଫାଇଲ୍ ଓ ଯନ୍ତ୍ରଣାପର ଫାଇଲ୍ ।

ଫାଇଲ୍ କଥା ଛାଡ଼ନ୍ତୁ । ମୁଁ ମୋ ଜୀବନକୁ ଦୁଇ ଭାଗରେ ବିଭକ୍ତ କରି ରଖିଛି । ଗୋଟାଏ ଜୀବନ, ଯାହା କଲଦାନ୍ତ ଯନ୍ତ୍ରଣାପୂର୍ବରୁ ଥିଲା ଓ ଦ୍ୱିତୀୟ ଜୀବନ, ଯାହା କଲଦାନ୍ତ ଯନ୍ତ୍ରଣା ପରେ ଆସିଲା । ଏବେତ ମୋର ସବୁ କଲଦାନ୍ତ ଉପୁଡ଼ି ଗଲାଣି । ଯେମିତିକି ମୁଁ ବି ଦାନ୍ତ ଡାକ୍ତର ବନିଗଲିଣି । ବରଂ ଏହା କୁହନ୍ତୁ ଯେ ମୋର କୃତ୍ରିମ ବତିଶ ଦାନ୍ତ ଉପୁଡ଼ିବାର ସମୟ ଆସିଲାଣି । କୃତ୍ରିମ ବତିଶ ଦାନ୍ତ ଉପୁଡ଼ିବାର ତ

ଆଉ କଅଣ ହେବ । କାରଣ, ମୁଁ ଏ ଦାନ୍ତ ସେଟ୍ କାଢ଼ି ଶୋଇପଡ଼ିବା ପରେ, ମୋର ପିଲାମାନେ ତାକୁ ଖେଳଣାପରି ବ୍ୟବହାର କରନ୍ତି । ଘଣ୍ଟା ଘଣ୍ଟା ଧରି ସେ ବାପାଙ୍କ ଦାନ୍ତ ସହିତ ଖେଳନ୍ତି । ମୁଁ ପାକୁଆ ଅଭିଯୋଗ କଲେ ସ୍ତ୍ରୀ କହେ, "ଏତେ ତରତର କାହିଁକି ? ଦଶଟା-ବେଳେ ତ ଖାଉଚ । ଘଣ୍ଟେ ଦେଢ଼ଘଣ୍ଟା ତୁମ କୃତ୍ରିମ ଦାନ୍ତସେଟରେ ପିଲେ ଖେଳିଲେ ତ କଅଣ ବିଗିଡ଼ିଗଲା ? ପିଲାମାନଙ୍କ ପାଇଁ ଖେଳନା ଆଣିବାକୁ ତ ତୁମର ଶକ୍ତି ନାହିଁ; ଆଉ ପିଲାମାନେ ତୁମ କୃତ୍ରିମ ଦାନ୍ତ ସେଟକୁ ଖେଳନା କଲେ ତ ରାଗିବାର କଅଣ ଅଛି ? ଏମିତି ବି ତୁମେ ଘରେ ମୁହଁ ଫୁଲେଇ ରହୁଚ । ତୁମେ ହସିଦେଲେ, ତୁମ ଓଠରେ ଟିକିଏ ଦାନ୍ତ ଦେଖନ୍ତେ, ସେ ଆଶା ତ ପିଲାଙ୍କର ଆଶାରେ ରହିଲା । ଏବେ ତୁମ ହସବିନା ପିଲାଏ ତୁମ ଦାନ୍ତସେଟ୍ ଦେଖି ଖୁସିହେଉଛନ୍ତି ତ ହେବାକୁ ଦିଅ । ସେ ଖୁସିଟା ବି କାହାକୁ ମିଳେ ।"

ଏବେ ମୋ ପିଲାଦିନର ସାଙ୍ଗ ମାଙ୍ଗେରାମଜୀ ମୋର ପଡ଼ୋଶୀ ହୋଇ ଆସିବା ପରେ, ମୋର କୃତ୍ରିମ ଦାନ୍ତ ଆଉ ଘରେ ରହିପାରୁନି । ମାଙ୍ଗେରାମଜୀଙ୍କୁ ଯେତେବେଳେ କିଛି ଖାଇବାର ଦରକାର ହୁଏ, ତେବେ ଡାକିକରି କହନ୍ତି, "ଭାଇ ତୁମ ଦାନ୍ତସେଟ୍ ଖାଲିଅଛି ତ ଅଳ୍ପ ସମୟ ପାଇଁ ପଠେଇ ଦିଅ । ମୁଁ ଚିନାବାଦାମ ଖାଇ, ସମାଜ ବିରୋଧରେ ଦାନ୍ତ କଡ଼ମଡ଼କରି ତୁମକୁ ଫେରେଇ ଦେବି ।" ମାଙ୍ଗେରାମଜୀ ମୋ ସହ 'ଏକା ଥାଳି ଏକା ଭୋଜନ' ଥିଲେ, ଏବେ 'ଏକା ଦାନ୍ତ' ବି ହେଇଗଲେ ।

କିନ୍ତୁ ଆଜ୍ଞା, ମୋର କେବେ କେବେ ସେ ଜୀବନ ବି ମନେ ପଡ଼ୁଛି, ଯାହା କି କଳଦାନ୍ତ ବନ୍ଧା ପୂର୍ବରୁ ଥିଲା; କେତେ ହସଖୁସି ଆଉ ସଦ୍ୟ ଜୀବନ ଥିଲା ସେ । ମୋ ଗାଲ କେତେ ଗୋଲଗାଲ ଥିଲା । ମୋ ଚେହେରା କେମିତି ଉଜ୍ଜଳ ଥିଲା । ଜାଣେନା, ମୋର ସେ ଚେହେରା କୁଆଡ଼େ ହଜିଗଲା । ଏବେ ତ ତଥାକଥିତ ଚେହେରାର ଅଭାସ ମାତ୍ର ରହିଛି ।

"ଯେ ରୂପ ଯାଇଚି ମାଟିରେ ମିଶି, ତାକୁ ଆଉ ରୂପ କହିବି କିଆଁ ।"



# ଶୋକସଭା

(ତାଳଅନ୍ତ ଜଳସେ)

କୌଣସି ବ୍ୟକ୍ତିର ମୃତ୍ୟୁର ଆନନ୍ଦରେ ଯେଉଁସବୁ ସଭା ଅନୁଷ୍ଠିତ ହୁଏ, ତାକୁ ଶୋକସଭା କହନ୍ତି । ସେହିସବୁ ସଭା ଅନୁଷ୍ଠିତ ହେବାର କୌଣସି ନିର୍ଦ୍ଦିଷ୍ଟ ସମୟ ନଥାଏ, କାରଣ ମୃତ୍ୟୁ ସମୟ ପାଞ୍ଜି ଦେଖି ଆସେ ନାହିଁ । ଏଇଥିଲାଗି ଆକାଶରେ ଇନ୍ଦ୍ରଧନୁ ହଠାତ୍ ଦେଖାଦେଲା ଭଳି, ଶୋକସଭାମାନ ଅନୁଷ୍ଠିତ ହୁଏ । ଏହିସବୁ ଶୋକସଭାର ଅନୁଷ୍ଠାନ ପାଇଁ ଜଣେ ପ୍ରସିଦ୍ଧ ବ୍ୟକ୍ତିର ମୃତ୍ୟୁ, ଦୁଇ-ତିନିଜଣ ଜୀବନ୍ତ ବକ୍ତା, ଗୋଟାଏ ମଞ୍ଚ, ଗୋଟିଏ ମାଇକ୍ରୋଫୋନ୍ ଆଉ କେତେଜଣ ଶ୍ରୋତା ଥିବା ନିହାତି ଦରକାର ।

ଅନେକ ସମୟରେ ଏମିତି ବି ହୋଇଥାଏ ଯେ ଶେଷୋକ୍ତ ଜିନିଷଗୁଡ଼ିକ ବହୁ ପୂର୍ବରୁ ସଂଗୃହୀତ ହୋଇସାରିଥାଏ; ମାତ୍ର ପ୍ରଥମଟି ଅର୍ଥାତ୍ ଜଣେ ପ୍ରସିଦ୍ଧ ଲୋକର ମୃତ୍ୟୁକୁ ଅପେକ୍ଷା କରାଯାଏ । ଏହି ଅପେକ୍ଷାଟି ପ୍ରାଣାନ୍ତକ ହୋଇଥାଏ । କାରଣ, ଆପଣ ଜାଣିଥିବେ, ଅନେକ ପ୍ରସିଦ୍ଧ ବ୍ୟକ୍ତି ବଡ଼ ମୁସ୍କିଲରେ ମରନ୍ତି । ବରଂ ତାଙ୍କୁ ମାରି-ଦେବାର ଯୋଗାଡ଼ଯନ୍ତ୍ର ହୋଇଯାଏ । ଯଦିଲେ ଏ ଖବର ମିଳେ ଯେ ଅମୁକ ପ୍ରସିଦ୍ଧ ବ୍ୟକ୍ତି ହୃଦବେଗରେ ଆକ୍ରାନ୍ତ ହୋଇଛନ୍ତି । ଏହି ଖବର ମିଳିବା ସଙ୍ଗେ ସଙ୍ଗେ ଶୋକସଭା କାରବାରର ଉଦ୍ୟୋକ୍ତାମାନଙ୍କ ଭିତରେ ଜୀବନର ଏକ ଲହଡ଼ି ଖେଳିଯାଏ । ଶୋକସଭାର ସମସ୍ତ ଆୟୋଜନ ସମ୍ପୂର୍ଣ୍ଣ କରି ଦିଆଯାଏ ଏବଂ ଏହାପରେ ସେହି ପ୍ରସିଦ୍ଧ ଲୋକର ମୃତ୍ୟୁ ପାଇଁ ଲୁଚିଛପାରେ ପ୍ରାର୍ଥନା ସଭାର ଆୟୋଜନ କରାଯାଏ । ତେବେ ଯଦି ସେହି ପ୍ରସିଦ୍ଧ ବ୍ୟକ୍ତି ମରିବାର ନାଁ ନଧରନ୍ତି,

ତେବେ ହତାଶାରେ ଉଦ୍ୟୋକ୍ତାମାନେ ଅନ୍ୟ କୌଣସି ପ୍ରସିଦ୍ଧ ବ୍ୟକ୍ତିଙ୍କ ଆଡ଼େ ସନ୍ତୃଷ୍ଟ ନୟନରେ ଚାହାଁନ୍ତି । କାରଣ, ମୃତ୍ୟୁ ସୁନିଶ୍ଚିତ ହେଉ ବା ନହେଉ, ଆୟୋଜନ ସମ୍ପୂର୍ଣ୍ଣ ହୋଇଯିବା ପରେ, ଶୋକସଭାର ଅନୁଷ୍ଠାନ ସୁନିଶ୍ଚିତ ହୋଇଯାଏ । ପ୍ରସିଦ୍ଧ ବ୍ୟକ୍ତିମାନଙ୍କ ବିଷୟରେ ମୁଁ ଶୁଣିଛି କି ସେମାନଙ୍କ ସ୍ମରଣରେ କୌଣସି ଶୋକସଭା ଅନୁଷ୍ଠିତ ନହେବା ଯାଏଁ ସେମାନଙ୍କର ମୃତ୍ୟୁ ସମ୍ପୂର୍ଣ୍ଣ ହୁଏ ନାହିଁ । କୌଣସି ପ୍ରସିଦ୍ଧ ଲୋକର ମୃତ୍ୟୁ ଉପରେ ଯଦି ଶୋକସଭା ଅନୁଷ୍ଠିତ ନହୁଏ, ତେବେ ଏହି ବ୍ୟକ୍ତିଙ୍କର ଅକାଳ ମୃତ୍ୟୁ ହୋଇଛି ବୋଲି ଅନୁଭବ କରାଯାଏ । ସତେ ଯେମିତି ଏ ଶୋକସଭାଟା ମୃତ ବ୍ୟକ୍ତିର ଶବାଧାରରେ ମରା ହେଉଥିବା ଶେଷକଣ୍ଟା । ବିଖ୍ୟାତ ଲୋକଙ୍କୁ ଭଲ ଭାବରେ ମାରିବା ପାଇଁ ଶୋକ-ସଭାରୂପୀ ହତିଆର ଏକାନ୍ତ ଦରକାର । ନଚେତ୍ ଭୟ ଲାଗିରହିଯାଏ— କାଳେ ଏ ବ୍ୟକ୍ତି ପୁଣି ବଞ୍ଚି ଉଠିବ କି ? ଏଥିଲାଗି ପ୍ରସିଦ୍ଧ ବ୍ୟକ୍ତିଙ୍କ ମୃତ୍ୟୁ ଓ ଶୋକସଭାର ଅନୁଷ୍ଠାନରେ ବେଶୀ ପାର୍ଥକ୍ୟ ରଖାଯାଏ ନାହିଁ । ବରଂ ଅନେକ ସମୟରେ ଏପରି ବି ହୁଏ କି ମୃତବ୍ୟକ୍ତିର ଜୀବନର ଶେଷ ଓ ଶୋକସଭାର ଆରମ୍ଭ, ଏକ ସମୟରେ ହୋଇଯାଏ । ଗୋଟିଏ ଶୋକସଭାରେ ମୁଁ ଏପରି ଦେଖିଛି କି ବକ୍ତା ଓ ଶ୍ରୋତା ଉପସ୍ଥିତ ଥିଲେ କିନ୍ତୁ ସଭା ଆରମ୍ଭର ଚିହ୍ନ ଦେଖାଯାଉ ନଥିଲା । ମୁଁ ଜଣେ ଭଦ୍ରଲୋକଙ୍କୁ ଫୁସ୍ ଫୁସ୍ କରି ପଚାରିଲି, "ମହାଶୟ ! ସଭା ଆରମ୍ଭ ହେବାରେ ଡେରି ହେଉଛି କାହିଁକି ?" ସେ କହିଲେ, "କିଛି ନାହିଁ ଆଜ୍ଞା ! ଲୋକର ମୃତ୍ୟୁକୁ ଅପେକ୍ଷା କରାଯାଉଛି । ଶୁଣୁଛି ଆଉରି ୨/୪ଟା ନିଶ୍ୱାସ ତାଙ୍କର ବାକି ରହିଯାଇଛି ।" ମୁଁ କହିଲି, "ଭଗବାନଙ୍କ ଉପରେ ଆସ୍ଥା ରଖି ସଭାଟା ଆରମ୍ଭ କରିଦିଅନ୍ତୁ । ସଭା ଶେଷ ହେବା ଭିତରେ ଦି' ଚାରିଟା ନିଶ୍ୱାସ ବାହାରିଯିବ ।"

ଏତିକିବେଳେ ଖବର ଆସିଲା ଯେ 'ସେ ଚାଲିଗଲେ', ଆଉ ସଭାରେ ଜୀବନର ଲହଡ଼ି ଖେଳିଗଲା ।

ସବୁ ସହରରେ ଏପରି କେତେକ ସମିତି ଥାଏ, ଯେଉଁମାନେ କି ଶୋକସଭା ଅନୁଷ୍ଠାନ କରିବାର କାରବାର ବରାବର କରନ୍ତି ।

ସେମାନଙ୍କର ନାମ ସେତିକବେଳେ ଆଗକୁ ଆସେ, ଯେତେବେଳେ କୌଣସି ପ୍ରସିଦ୍ଧ ବ୍ୟକ୍ତି ମରିଯାଆନ୍ତି । ଯଦି ପ୍ରସିଦ୍ଧ ବ୍ୟକ୍ତିମାନେ ମରିବା ଛାଡ଼ି ଦିଅନ୍ତି, ତେବେ ଏହି ସମିତିଗୁଡ଼ିକ ନିଜ ମୃତ୍ୟୁକୁ ନିଜେ ବରଣ କରିଯିବେ । ଯେଉଁଠି କୌଣସି ପ୍ରସିଦ୍ଧ ବ୍ୟକ୍ତି ନିଜ ଜୀବନର ଶେଷ ମୁହୂର୍ତ୍ତ ଗଣିବାକୁ ଲାଗେ, ସେଠି ଏ ସମିତିମାନେ ଚିଲ ଓ ଶାଗୁଣା ପରି, ଆପଣା ଶିକାରର ଗୃହପାଖରେ ଘୂରିବାକୁ ଲାଗନ୍ତି ।

ଶୋକସଭାର ବିଶେଷତ୍ୱ ହେଉଛି କି ମୃତ୍ୟୁଗତ ବ୍ୟକ୍ତିଙ୍କ ଛଡ଼ା ଏଠାରେ ଅନ୍ୟ ସମସ୍ତେ ଉପସ୍ଥିତ ଥାଆନ୍ତି । ଏହା ବଡ଼ ଅଦ୍ଭୁତ ଚଳଣି । ଯେଉଁ ବ୍ୟକ୍ତି ପାଇଁ ଏସବୁ ଯୋଗାଡ଼ ହୁଏ, ସେ ଘଟଣାସ୍ଥଳରୁ ଗାଏବ୍ ହୋଇ ରହନ୍ତି । ଏକ ଶୋକସଭାରେ ଜଣେ ଶ୍ରୋତା ମୋତେ ପଚାରିଥିଲେ—"ଭାଇ, ଯେଉଁ ମହାଶୟଙ୍କ ସମ୍ମାନରେ ଏ ସଭାଟା ଅନୁଷ୍ଠିତ ହେଉଅଛି, ସେ କେଉଁଠି ବସିଅଛନ୍ତି ମୋତେ କହନ୍ତୁ ତ ।"

ଆପଣ ଏହାକୁ ଅତିଶୟୋକ୍ତି ବୋଲି ଭାବନ୍ତୁ ନାହିଁ । ମୋତେ ଅରେ ଜୀବିତ ଥାଇ, ମୋ ଶୋକସଭାରେ ଯୋଗ ଦେବାର ସୁଯୋଗ ମିଳିଥିଲା । ଏପରି ସୁବର୍ଣ୍ଣ ସୁଯୋଗ ଇତିହାସରେ ସମ୍ଭବତଃ କାହାକୁ ମିଳିଛି କି ନା ସନ୍ଦେହ । କଥାଟା ଏଇଆ ହେଲା ଯେ ମୋର ଜଣେ କେହି ଶତ୍ରୁ ଖବରକାଗଜରେ ପ୍ରକାଶ କରିଦେଲା ଯେ ମୁଁ ମରିଯାଇଛି ।

ତା ସଙ୍ଗେ ସଙ୍ଗେ ଏକ ସମିତି ତରଫରୁ ମୋର ସମ୍ମାନାର୍ଥେ ଏକ ଶୋକସଭା ଅନୁଷ୍ଠିତ ହେବାର ଘୋଷଣା କରାଯାଇଥିଲା । ମୁଁ ସ୍ଥିର କଲି, ଏ ସଭାରେ ପ୍ରଥମେ ମୋର ଯୋଗଦେବା ଉଚିତ; କାରଣ, ଏପରି ସୁଯୋଗ ସବୁ ଲୋକଙ୍କୁ ମିଳେ ନାହିଁ । ତାପରେ କେବଳ ମୋର ମୃତ୍ୟୁରେ ନୁହେଁ ବରଂ ସଭାରେ ହେଉଥିବା ବକ୍ତୃତାଗୁଡ଼ିକର ମଧ୍ୟ ପ୍ରତିବାଦ କରିପାରିବ । ସୁତରାଂ ମୁଁ ବେଶ ବଦଳାଇ ସଭାକୁ ଗଲି । ସଭାରେ ସେହିମାନେ ଜମା ହୋଇଥିଲେ, ଯେଉଁମାନଙ୍କ ସହ ମୋର ଚିରଶତ୍ରୁତା ରହି ଆସିଛି । ଜଣେ ବକ୍ତା ମହୋଦୟ ମୋ କଡ଼ରେ ବସିଥିଲେ । ସେ ଗମ୍ଭୀରତାର ସହ ମୋଠାରୁ ରୁମାଲ ମାଗିଲେ ।

ମୁଁ ପଚାରିଲି "କେଉଁଥିଲାଗି ?"

ସେ ମୋତେ ଆଖିମାରି ଆଉ ତାଙ୍କ ଓଠରେ ଉକୁଟି ଉଠୁଥିବା ହସକୁ ଚପେଇ ରଖି କହିଲେ—"ଷ୍ଟେଜ୍‌ରେ ବକ୍ତୃତା ଭିତରେ ମୋତେ ତ କାନ୍ଦିବାକୁ ପଡ଼ିବ, ସେଇଥିଲାଗି ।"

ମୁଁ ମୋର ରୁମାଲ କାଢ଼ି ତାଙ୍କୁ ଦେଇଦେଲି ।

ଏହି ସଭାରେ ଯୋଗଦେବା ପରେ ମୋତେ ପ୍ରଥମ ଥର ପାଇଁ ଜଣାଗଲା କି ମୋର ଶତ୍ରୁମାନେ ମୋ ବିଷୟରେ ଖୁବ୍ ଭଲ ଧାରଣା ରଖିଚନ୍ତି । ଯେଉଁମାନେ ସାରା ଜୀବନ ମୋତେ ଧୋକାବାଜ ଓ ଦଗାବାଜ ବୋଲି ଭାବି ଆସିଥିଲେ, ସେମାନେ ହଠାତ୍ ମୋର ଭଦ୍ରତା, ସଚ୍ଚୋଟପଣିଆ ଓ ମହତ୍ତ୍ୱର ଗୁଣ ଗାଇବାକୁ ଲାଗିଲେ । କେତେକ ବକ୍ତା ତ ଏପରି ଘଟଣାବଳୀ ମୋ ଉପରେ ଆରୋପ କଲେ, ଯାହାର କି କୌଣସି ସମ୍ବନ୍ଧ ମୋ ବ୍ୟକ୍ତିତ୍ୱ ସହ ନଥିଲା । ଉଦାହରଣ ସ୍ୱରୂପ—ଜଣେ ବକ୍ତା ମୋ ବିଷୟରେ କୋହ ଉଠାଇ କହିଲେ—"ସ୍ୱର୍ଗତ (ଅର୍ଥାତ୍ ମୁଁ) ଆତ୍ମସମ୍ମାନ ସମ୍ପନ୍ନ ଲୋକ ଥିଲେ । ସାରା ଜୀବନ କାହା ପାଖରେ ହାତ ପତାଇ ନଥିଲେ । ଦି' ଦିନଯାଏ ତାଙ୍କ ଘରେ ଚୁଲି ଜଳି ନଥିଲା କିନ୍ତୁ ବାହାରେ ଆଣ୍ଠୁ । କାହାରି କାନରେ ଏ କଥା ପକେଇବାକୁ ଦେଲେ ନାହିଁ । ଲଗାଲଗ ଦୁଇ ଦିନଯାଏ ଯେତେ-ବେଳେ ତାଙ୍କ ପୁଅ ଚୁଲି ଜଳେଇବା ପାଇଁ ନିଆଁ ମାଗିବାକୁ ମୋ ଘରକୁ ନ ଆସିଲା, ତେବେ ଯାଇ ତାଙ୍କର ଏ ଅବସ୍ଥା ମୋତେ ଜଣାଗଲା । ଚୁପ୍‌ଚାପ୍ ପାଞ୍ଚଶହ ଟଙ୍କା ଧରି ତାଙ୍କ ଘରେ ଯାଇ ପହଞ୍ଚିଲି । ଯେତେବେଳେ ଟଙ୍କାଟା ତାଙ୍କ ହାତରେ ଦେଲି, ସେ କହିଁ କହିଁ ହୋଇ କାନ୍ଦି ଉଠିଲେ । କହିଲେ—"ତୁମେ ବନ୍ଧୁତ୍ୱର ଦାବି ଆଦାୟ କରିନେଲ । ଏବେ ଦୁନିଆରେ ଏପରି ଅଳ୍ପ ଲୋକ ଅଛନ୍ତି, ଯାହାଙ୍କ ସଙ୍ଗେ ଏମିତିଆ ବନ୍ଧୁତ୍ୱ ରଖାଯାଇ ପାରିବ ।"

ବକ୍ତା ମହୋଦୟ ମୋ ବିଷୟରେ ଏହି ମତ ଦେଇ ଏପରି କାନ୍ଦିବାକୁ ଲାଗିଲେ, ସତେ ଯେପରି ମୋ ମୃତ୍ୟୁ ପାଇଁ ନୁହେଁ, ବରଂ ତାଙ୍କର ଟଙ୍କା ବୁଡ଼ିଯିବାର ଦୁଃଖ ତାଙ୍କୁ ଖାଇଯାଉଥିଲା । ବିଷୟାନ୍ତର

ପାଇଁ କ୍ଷମା ମାଗୁଛି । ମୁଁ ଏ କଥା କହୁଛି ଯେ, ଥରେ ମୁଁ ନିଜର ଆତ୍ମ-ସମ୍ମାନ କାନ୍ଥକୁଣରେ ରଖି, ଉକ୍ତ ବକ୍ତା ମହୋଦୟଙ୍କୁ ପାଞ୍ଚଟଙ୍କା ଉଧାର ମାଗିଥିଲି । ତା ଜବାବରେ ସେ ପାଞ୍ଚଶହ ପ୍ରକାର ଅଜୁହା କଥା ବଖାଣି ବସିଲେ ।

ମୁଁ ବହୁତ ସମୟଯାଏ ଧୀରସ୍ଥିର ଭାବରେ ମୋ ଉପରେ କୁହାଯାଉଥିବା ସୁଗୁଣ ସବୁ ଶୁଣିଗଲି । କିନ୍ତୁ ଜଣେ ବକ୍ତା, ଯାହାଙ୍କୁ କି ମୁଁ ଆଜିଯାଏ ଦେଖିନଥିଲି, ମନରୁ କଳ୍ପନାକରି କହିଲେ ଯେ ମାଟ୍ରିକ ପରୀକ୍ଷାରେ ଫେଲ୍ ହୋଇଯିବା ପରେ, ମୁଁ ଆତ୍ମହତ୍ୟା କରିବା ଉଦ୍ଦେଶ୍ୟରେ ସମୁଦ୍ରକୁ ଡେଇଁପଡ଼ିଥିଲି ଆଉ ଉକ୍ତ ବକ୍ତା ନିଜ ଜୀବନକୁ ପାଣିଛଡ଼େଇ ଦେଇ ମୋ ଜୀବନ ବଞ୍ଚେଇଥିଲେ । ଯେତେବେଳେ ସେ ଏହା କହିଲେ, ସେତେବେଳେ ମୋର ଧୈର୍ଯ୍ୟର ସୀମା ଟପିଗଲା । ମୋର ଏ ଶୋକସଭାକୁ ବରଦାସ୍ତ କରିବାର ଜୋର ନଥିଲା, କାରଣ ମୁଁ ଅନୁଭବ କରୁଥିଲି, ଯେପରିକି ମୁଁ ନିଜର ନୁହେଁ, ଅନ୍ୟର ଶୋକସଭାରେ ଯୋଗ ଦେଇଛି । ଏଥିଲାଗି ଶୀଘ୍ର ସେଠାରୁ ପଳେଇ ଆସିଲି ଏବଂ ପରଦିନ କେବଳ ଯେ ମୋର ମୃତ୍ୟୁର ଖଣ୍ଡନ କଲି ତା ନୁହେଁ, ବରଂ ଏ କଥାର ବି ଖଣ୍ଡନ କଲି କି ମୁଁ କେତେବେଳେ ଏତେ ଆତ୍ମସମ୍ମାନ ସମ୍ପନ୍ନ ନଥିଲି ଯେ ମୋ ଘରେ ଦୁ'ଦିନଧରି ଚୁଲି ଜଳିନ ଆଉ ମୁଁ କାହାକୁ ପାଞ୍ଚଟଙ୍କା ମାଗିବିନି । ମୋ ଉଦ୍ଦେଶ୍ୟରେ କୁହାଯାଇଥିବା ଭଦ୍ରତା ଓ ସାଧୁତାର ପ୍ରତିବାଦକରି ଏହା ମଧ୍ୟ ଘୋଷଣା କଲି ଯେ ଏସବୁ କିଛି ଅଭିଯୋଗ ମୋ ଶତ୍ରୁଙ୍କଦ୍ୱାରା କରାଯାଇଛି; ଯେଉଁଥିରେ କି ମୋର କିଛିହେଲେ ସମ୍ପର୍କ ନାହିଁ ।

ଏ ଘଟଣା ପରେ ଅନ୍ୟମାନଙ୍କ ପାଇଁ ହେଉଥିବା ଶୋକ-ସଭାରେ ଯୋଗଦେବାକୁ ମୋତେ ଭାରି ଖୁସି ଲାଗିଲା । ବିଶେଷକରି ମୁଁ ସେହିସବୁ ଆଲୋଚନା ପ୍ରତି ବେଶି ଆଗ୍ରହାନ୍ୱିତ ହୁଏ; ଯେଉଁଟା କି ଶୋକସଭାମାନଙ୍କ ଆଗରୁ ହୁଏ ।

ଜଣେ ଭଦ୍ରବ୍ୟକ୍ତି କହିଲେ—"ମୃତବ୍ୟକ୍ତି ପ୍ରକୃତରେ ଯେ ମରିଛନ୍ତି, ତାହା ମୋର ବିଶ୍ୱାସ ହୁଏନାହିଁ । ପଅରଦିନ ମୁଁ ତାଙ୍କୁ

ଆବଦ୍ ରୋଡ଼ରେ ଗୋଟିଏ ରିକ୍ସାବାଲା ସାଙ୍ଗରେ ଧକ୍କାଟକ୍ ଲଗେଇବାର ଦେଖିଛି ।"

ଅନ୍ୟ ଜଣେ କହିଲେ—"ଆପଣ ପଅରଦିନ କଥା କହୁଛନ୍ତି ? ମୁଁ କାଲି ତାଙ୍କୁ ଲୁଚଛପି ନିଜ ପଡ଼ୋଶୀର କୁକୁଡ଼ାକୁ ଧରିବାର ଦେଖିଛି ।"

ଜଣେ ଭଦ୍ରବ୍ୟକ୍ତି ପଚାରିଲେ—"ମୃତ ବ୍ୟକ୍ତି କିଛି ଜମିବାଡ଼ି ଛାଡ଼ିଯାଇଛନ୍ତି ?" ଅନ୍ୟ ଜଣେ ଜବାବ ଦେଲେ—"ଜମିବାଡ଼ି ଛାଡ଼ିବେ କିଅଣ ସାରାଜୀବନ ନିଜ ଶ୍ୱଶୁର ସମ୍ପତ୍ତି ବିକି ଖାଉଥିଲେ । ମୁଁ ତ କହିବି, ସେ ନିଜର ଉତ୍ତମର୍ଣ୍ଣମାନଙ୍କ ଛଡ଼ା ଅନ୍ୟ କିଛି ଦୁନିଆରେ ଛାଡ଼ିଦେଇ ଯାଇନାହାନ୍ତି ।"

କେହି ଜଣେ ଭଦ୍ରବ୍ୟକ୍ତି ନକଲି ଦୀର୍ଘଶ୍ୱାସ ପକେଇ କହିଲେ—"କିନ୍ତୁ ପରଲୋକଗତ ବ୍ୟକ୍ତିଙ୍କର ଏତେ ଶୀଘ୍ର ମରିବାର ନଥିଲା ।"

ଅନ୍ୟଜଣେ କହିଲେ—"ଆପଣ ଠିକ୍ କହିଛନ୍ତି । ସ୍ୱର୍ଗତ ବ୍ୟକ୍ତି ହେତେବେଳେ ଦୁନିଆର କଷ୍ଟ ସହିଛନ୍ତି କୁଆଡ଼ୁ ? ତାଙ୍କ ଘରକୁ ସେପର୍ଯ୍ୟନ୍ତ କୋରଖ ଆସି ନଥିଲା । ଏହିମାତ୍ର ସ୍ୱର୍ଗତଙ୍କ ଜୀବନରେ ଦୁଃଖର ଆଭାସ ମାତ୍ର ଆସିଥିଲା । କିଛିଦିନ ଯଦି ସେ ଆଉ ବଞ୍ଚିଥାଆନ୍ତେ ତେବେ ଆମେ ମଜାଟା ଦେଖିଥାଆନ୍ତୁ ।"

ଗୋଟିଏ କଣରୁ ଫୁସ୍‌ଫୁସ୍ ହୋଇ ଏହା ବି ଶୁଣାଗଲା—"ଭାଇ ! ମୋ ମତ ହେଉଛି କି ସ୍ୱର୍ଗତଙ୍କ ସ୍ମରଣରେ ଏକ ମେମୋରିଆଲ କମିଟି ଗଢ଼ିଦିଆଯାଉ, ତୁମେ ଏହାର ସେକ୍ରେଟେରୀ ହୋଇଯାଅ, ମୁଁ କୋଷାଧ୍ୟକ୍ଷ ବନିଯାଉଛି । ଯାହା ଆମଦାନି ହେବ, ତାକୁ ଆମେ ଦି'ଜଣ ଫିଫ୍‌ଟି ଫିଫ୍‌ଟି ବାଣ୍ଟିନେବା । ସ୍ୱର୍ଗତଙ୍କ ଜୀବନରୁ ଆମକୁ କିଛି ଫାଇଦା ମିଳିଲା ନାହିଁ । କମ୍‌ସେକମ୍ ତାଙ୍କ ମୃତ୍ୟୁରୁ ଆମର ଫାଇଦା ଉଠେଇବା ଉଚିତ ।"

ଶୋକସଭାରେ ସାଧାରଣତଃ ବୁଢ଼ାମାନେ ଯୋଗ ଦିଅନ୍ତି । ଯୁବକମାନେ ଯଦି ଯୋଗ ଦିଅନ୍ତି, ତେବେ ସଭା ହେଉଥିବା ସମୟରେ ସେମାନେ ବଡ଼ ଅଧୈର୍ଯ୍ୟ ହୋଇ ପଡ଼ନ୍ତି । ସେହିପରି ଏକ ଶୋକ-ସଭାରେ ଏକ ଯୁବକ ଅନ୍ୟ ଯୁବକକୁ ଅଭିଯୋଗ କଲାଭଳି କହିଲା—

"ଦୋସ୍ତ ! ଏ ଶୋକସଭା ତ ବଡ଼ ଭାରକ୍ତ ଲାଗିଲାଣି । ମୁଁ ତୋତେ ପ୍ରଥମରୁ ମନାକରୁଥିଲି ନା ? ଏହା ବଦଳରେ ଯଦି ଆମେ କୌଣ ି ଛବି ଦେଖିବାକୁ ଯାଇଥାଆନ୍ତେ, ତେବେ କେତେ ମଜା ହୋଇଥାଅନ୍ତା ! ହାତ୍, ଆଜିର ସନ୍ଧ୍ୟାଟା ଏହିଭଳି ବରବାଦ୍ ହୋଇଗଲା ।"

ସବୁ ଶୋକସଭାପରେ ଦୁଇ ମିନଟ୍ ନୀରବତା ପାଳନ କରାଯାଏ, ଯେଉଁଥିରେ କି ପିଲାଙ୍କର କାନ୍ଦଣାର ଆବାଜ୍ ଖୁବ୍ ପରିଷ୍କାର ଭାବରେ ଶୁଣାଯାଏ । ଯଦି ସଭାରେ ସ୍ତ୍ରୀମାନେ ଥାଆନ୍ତି, ତାହାହେଲେ ସେମାନେ ଏହି ଘୋଷଣାର ଦୁଇ ମିନଟ୍ ପୂର୍ବରୁ ହିଁ ହଲ୍‌ରୁ ବାହାରି ଚାଲିଯାଆନ୍ତି, କାରଣ ସ୍ତ୍ରୀମାନଙ୍କ ପକ୍ଷରେ ଦୁଇ-ମିନଟ୍‌ର ନୀରବତା ଅବଲମ୍ବନ କରିବା ଦୁଇ ବର୍ଷର କଠିନ ସଜା ସଙ୍ଗେ ସମାନ । ଏଥିଲାଗି ଥରେ ମୋତେ ଗୋଟିଏ ଶୋକସଭାର ଆବାହକ କହାଯାଇଥିଲା ଏବଂ ମୁଁ ଦୁଇ ମିନଟ୍ ନୀରବତା ପୂର୍ବରୁ ଏହି ଘୋଷଣା ମଧ୍ୟ କରିଥିଲି—"ବନ୍ଧୁଗଣ ! ଦୁଇ ମିନଟ୍ ପରେ ଦୁଇ ମିନଟର ନୀରବତା ପାଳନ କରାଯିବ; ତେଣୁ ଭଦ୍ରମହିଳାମାନଙ୍କୁ ଅନୁରୋଧ କି ସେମାନେ ଏହି ସମୟ ଭିତରେ ହଲ୍‌ରୁ ବାହାରି ଚାଲିଯାଆନ୍ତୁ ।"

ପୁରୁଷମାନେ ପ୍ରକୃତରେ ଦୁଇ ମିନଟ୍ ନୀରବତାରେ ଖୁବ୍ ଲାଗିପଡ଼ି ଭାଗ ନିଅନ୍ତି । ଆଉ ଏହି ଦୁଇ ମିନଟ୍ ନୀରବତା ଭିତରେ ସେମାନେ ସାଧାରଣତଃ ନିଜର ଗୃହ ସମସ୍ୟା ବିଷୟରେ ଭାବି ନିଅନ୍ତି; କାରଣ, ବର୍ତ୍ତମାନ କାଳରେ ଏତେ କର୍ମଜଞ୍ଜାଳ ଲାଗି ରହିଛି ଯେ, ମଣିଷକୁ ଭାବିବା ପାଇଁ ଦୁଇ ମିନଟ୍ ବି ବଡ଼ ମୁସ୍କିଲରେ ମିଳେ । ଏଥିଲାଗି ମୋତେ କୌଣସି ସମସ୍ୟା ଉପରେ ଗଭୀର ଚିନ୍ତା କରିବାକୁ ପଡ଼ିଲେ, ମୁଁ କୌଣସି ଏକ ଶୋକସଭାକୁ ଚାଲିଯାଏ ଆଉ ଦୁଇ ମିନଟ୍ ନୀରବତାର ଫାଇଦା ଉଠେଇ, ନିଜ ସମସ୍ୟାକୁ ସମାଧାନ କରିନିଏ । ଏବେ ଆପଣଙ୍କୁ ଲୁଚେଇବି କଅଣ, ମୁଁ ମୋର ବିବାହର ଫଇସଲ୍ ଗୋଟିଏ ଶୋକସଭାର ଦୁଇ ମିନଟ୍ ନୀରବତା ମଧ୍ୟରେ ହିଁ କରିଥିଲି । ସେ ଏକ ଅନ୍ୟ କଥା ଯେ ଏଇ ଦୁଇ ମିନଟ୍‌ର ନୀରବତା ଏବେ ବ୍ୟାପି-ଯାଇ, ମୋ ଜୀବନରେ ଚିରସ୍ଥାୟୀ ହୋଇଗଲା ଆଉ ଲଢ଼େଇ ଭିଡ଼େଇରେ ପରିଣତ ହୋଇଯାଇଛି ।



# ସଭାପତି ମହୋଦୟ

ପିଲାଦିନେ ଯେତେବେଳେ ପ୍ରଥମଥର ପାଇଁ ମୋତେ ଏକ ସଭାରେ ଯୋଗ ଦେବାର ସୁଯୋଗ ମିଳିଲା, ଦେଖିଲି ସଭାର ପ୍ରତ୍ୟେକ ବକ୍ତା 'ସଭାପତି ମହୋଦୟ, ସଭାପତି ମହୋଦୟ' ବୋଲି ବାରମ୍ବାର କହି ଲାଗିଛନ୍ତି, ଆଉ ବେଳେବେଳେ 'ସଭାପତି ମହୋଦୟ'ଙ୍କ ଅନୁମତି ନେଇ ଏମିତି କଥା କହୁଛନ୍ତି, ଯାହାକୁ କି କହିବାଲାଗି କାହାର ବି ଅନୁମତି ନେବା ଦରକାର ପଡ଼େନାହିଁ । ମୁଁ ନିଜେ ଏହା ଜାଣିବାକୁ ଚେଷ୍ଟାକଲି ଯେ, 'ସଭାପତି ମହୋଦୟ' କିଏ ଏବଂ ସେ କେଉଁଠାରେ ଅବସ୍ଥାନ କରନ୍ତି । ଗୋଟିଏ ଲୋକକୁ ଦେଖିଲି, ଯିଏ କି ବଡ଼ ଫୁର୍ତ୍ତି ଦେଖାଇ ସଭାସ୍ଥଳର ଶେଷ ଅଂଶର ଶତରଞ୍ଜି ବିଛାଉ ଥିଲେ, ଆଉ ପେଟ୍ରୋମାକ୍ସ ଆଲୁଅଟିକୁ ଏପାଖ ସେପାଖ କରୁଥିଲେ । ଯେହେତୁ ସେତେବେଳେ ସେହି ଲୋକଟି କାମିକା ଆଉ ଗୁରୁତ୍ୱପୂର୍ଣ୍ଣ ଦେଖା-ଯାଉଥିଲେ, ସେଥିଲାଗି ମୁଁ ଭାବିଲି, ନିଶ୍ଚୟ ସେ ସଭାପତି ମହୋଦୟ ହୋଇଥିବେ । ମୁଁ ତାଙ୍କ ପାଖକୁ ଗଲି ଆଉ ପଚାରିଲି—"ଭାଇ, ତୁମେ କଅଣ ସଭାପତି ମହୋଦୟ ?"

ସେ ଲୋକ ଅଚାନକ ଚିଗିଡ଼ିଗଲା ଆଉ କହିଲା—"ଠିକ୍‌ଏ ମୁହଁ ସମ୍ଭାଳି କଥା କୁହ । କାହାକୁ 'ସଭାପତି ମହୋଦୟ' କହୁଛ ? କଅଣ ମୁଁ ତୁମକୁ ନିକମା, ପକ୍ଷାଘାତ ରୋଗୀ ଓ ବେକାର ଲୋକପରି ଦେଖା-ଯାଉଛି ଯେ ତୁମେ ମୋତେ 'ସଭାପତି ମହୋଦୟ' କହୁଛ ? ଏବେବି ମୋର ହାତଗୋଡ଼ ସବୁ ଭଲ ଅଛି । ମୋ ନିଜ ଦାନା ମୁଁ ନିଜେ କମଉଛି । ମୁଁ ଏତେ ପଙ୍ଗୁ ହୋଇନି ଯେ ତୁମେ ମୋତେ 'ସଭାପତି ମହୋଦୟ' ବୋଲି କହିବ । ସଭାପତି ମହୋଦୟ ତ ସେ ହେଉଛି ଯିଏକି ମଞ୍ଚ ଉପରେ ନିଜ ସାମନାରେ ଫୁଲହାର ରଖି ଏପରି ଭାବରେ

ବସିଛୁ, ଯେପରିକି ଗୋଟିଏ ସିଂହ ମାରିଥିବା ତାର ଶିକାରକୁ ଆଗରେ ରଖିଥାଏ।"

ଏହା କହି ସେ ସେହି ଲୋକଆଡ଼କୁ ଆଙ୍ଗୁଠି ଦେଖାଇ ଦେଲା, ଯିଏକି 'ସଭାପତି' ଆସନରେ ବସି ପ୍ରାୟ ଢୁଳାଉଥିଲା।

ସେହିଦିନଠାରୁ ଆଜଯାଏ ମୁଁ ଅସଂଖ୍ୟ ସଭାରେ ଯୋଗଦେଇ ସାରିଛି; ବରଂ ଗୋଟାଏ ସଭାରେ ସଭାପତିତ୍ୱ କରିବା ପାଇଁ ନିମନ୍ତ୍ରଣ ମଧ୍ୟ ମୋ ପାଖକୁ ଆସିଛି, କିନ୍ତୁ ଯେତେବେଳେ ମୁଁ ଏହି ନିମନ୍ତ୍ରଣ ରକ୍ଷା କରିବାକୁ ଚାହାଁକଲି, ମୋର ସେହି ଲୋକର କଥା ମନେ ପଡ଼ିଲା ଏବଂ ମୋତେ ଜଣାଗଲା ଯେ ମୁଁ ତ ଏବେ ମୋ ନିଜ ଦାନା-ଦନା ରୋଜଗାର କରି ପାରୁଛି ଆଉ ମୁଁ ଏତେ ପଙ୍ଗୁ ହୋଇଯାଇନି ଯେ 'ସଭାପତି ମହୋଦୟ'ଙ୍କ ପଦବୀ ହାସଲ କରିବି।

ଆପଣ ଅନେକ ସଭାପତି ଦେଖିଥିବେ। ଆପଣଙ୍କର ଏ କଥା ମଧ୍ୟ ବିଶ୍ୱାସ ହୋଇଯାଇଥିବ କି ପ୍ରତ୍ୟେକ ସଭାପତି ଅନ୍ୟ ଏକ ସଭାପତି ସହ ଦେଖିବାକୁ ଏକ। ଭଗବାନ ମଣିଷର ଗୋଟିଏ ହାତର ପାଞ୍ଚ ଆଙ୍ଗୁଠି ସମାନ କରିନାହାଁନ୍ତି କିନ୍ତୁ ଆଶ୍ଚର୍ଯ୍ୟର କଥା ସେ ସବୁ ସଭାପତିଙ୍କୁ କିପରି ଏକ ପ୍ରକାରର କଲେ! ସେମାନଙ୍କର ସରଗରମି ଏକ, ଚାଲିଚଳନ ଏକ, ଆଉ କାମଦାମ ମଧ୍ୟ ଏକ।

ସଭାପତି ମହୋଦୟଙ୍କ କାମ ଏଇଆ ହେଲା ଯେ କୁର୍ସିରେ ଅଠା ଲଗାଇ ବସିଯିବା; ଆଉ କୁର୍ସିରୁ କେବେହେଲେ ଉଠିବାକୁ ଚେଷ୍ଟା ନ କରିବା। ତାର ଏତିକି ମାତ୍ର ସୁବିଧା ଅଛି ଯେ କ୍ରମାଗତ ଏକ-ମୁହାଁ ହୋଇ ବସିବା ଫଳରେ ତା ଅଙ୍ଗରେ ପୀଡ଼ା ଲାଗିବାକୁ ଆରମ୍ଭ କରେ କିମ୍ବା ସଭାପତିଙ୍କ କୁର୍ସିରୁ ଛାରପୋକ ବାହାରି, ସଭାପତି ମହୋ-ଦୟଙ୍କୁ ଅସ୍ତବ୍ୟସ୍ତ କରିଲାଗେ ତେବେ ସେ କେବଳ କଡ଼ ବଦଳେଇ ପାରିବେ କିନ୍ତୁ କୁର୍ସିତ୍ୟାଗ କରିପାରିବେନି। କେତେକ ସଭାପତିଙ୍କୁ କୁର୍ସିରେ ଏତେ ସମୟ ଧରି ବସିବାକୁ ପଡ଼େ ଓ ଏପରି ଏକ ଅବସ୍ଥା ଆସିଯାଏ ଯେ 'କୁର୍ସି' ଓ 'ସଭାପତି' ଭିତରେ କିଛି ପାର୍ଥକ୍ୟ ଦେଖାଯାଏ ନାହିଁ। ଶ୍ରୋତାମାନଙ୍କୁ ଏହା ଠଉରେଇବାକୁ କଷ୍ଟ ହୁଏ ଯେ, କୁର୍ସି କେଉଁଠି

ଶେଷ ହେଲା ଆଉ ସଭାପତି ମହୋଦୟ କେଉଁଠାରୁ ଆରମ୍ଭ ହେଲେ।
'କୁର୍ସି' ଓ 'ସଭାପତି' ଏକ ଆତ୍ମା ଓ ଦୁଇଟି ହୃଦୟବିଶିଷ୍ଟ ହୋଇଯାଆନ୍ତି।
ମୋର ଏବେ ସେହି ପିଲାର କଥା ମନେ ପଡ଼ୁଛି, ଯିଏକ କୁର୍ସି ଉପରେ ବସିଥିବା ଏକ ସଭାପତିଙ୍କୁ କ୍ରମାଗତ ଦୁଇଘଣ୍ଟା ଯାଏ ଦେଖିବା ପରେ ନିଜ ବାପାଙ୍କୁ ପଚାରିଥିଲା—"ଡାଡ଼ି ! ମହୋଦୟଙ୍କର କଅଣ ଛଅଟା ଗୋଡ଼ ?"

ଏଥିରେ ବାପ ବଡ଼ ସ୍ନେହରେ ପୁଅକୁ ବୁଝେଇଥିଲା—"ନା ପୁଅ, ଏହି ଛଅ ଗୋଡ଼ ଭିତରେ ଦୁଇଟି ଗୋଡ଼ ସଭାପତି ମହୋଦୟଙ୍କର ଅଛି, ଆଉ ବାକି ଚାରିଟା ସଭାପତିଙ୍କ କୁର୍ସିର। ଯଦିଓ ଏ ପ୍ରବାଦଟି ପ୍ରସିଦ୍ଧ ଯେ ସଭାପତି ଯେଉଁ ସ୍ଥାନରେ ବସିଲେ ବି ସଭାପତି ହୁଏ; ତଥାପି 'ସଭାପତିତ୍ୱ' ପାଇଁ 'ସଭାପତି-କୁର୍ସି' ନିହାତି ଦରକାର, ବରଂ ଜଣେ ଭଦ୍ରଲୋକଙ୍କର ଏଭଳି ଖିଆଲ ଅଛି ଯେ ସଭାପତିତ୍ୱରେ କୁର୍ସି ଛଡ଼ା ଆଉ କିଛି ନଥାଏ। କୁର୍ସିକୁ କାଢ଼ି ଦିଅ, ତେବେ ସଭାପତିତ୍ୱ ଆପେ ଆପେ ଗାଏବ୍ ହୋଇଯିବ। ସଭାପତି-କୁର୍ସିରେ ବସିବାଲାଗି ବହୁତ ଅଭିଜ୍ଞତା ଓ ସାଧନାର ଦରକାର ପଡ଼େ, ବରଂ ମୁଁ ତ ଭାବୁଛି ଯେ ପେଶାଦାର ସଭାପତି, ଏ କଳାର (ଫନ୍) ପ୍ରଶିକ୍ଷଣ ହାସଲ କରିଥାନ୍ତି। କାହିଁକି ନା, ଗୋଟିଏ କୁର୍ସି ଉପରେ ଅଯଥା ଘଣ୍ଟା ଘଣ୍ଟା ଧରି ବସି ରହିବା ମଧ୍ୟ ଗୋଟିଏ ଦକ୍ଷତା। କେତେକ ସୁଦକ୍ଷ ସଭାପତି ମହୋଦୟ ଏପରି ମଧ୍ୟ ହୁଅନ୍ତି କି—ସଭାପତି ଚୌକିରେ ଏପରି ଜମି ବସିଯାଆନ୍ତି ଯେ, ସଭାପତି-କୁର୍ସି 'ଆପୁତଲ୍ କୁର୍ସି' ⁎ ୧ ପଡ଼ିବା ଆରମ୍ଭ କରିଦିଏ ଓ ଶେଷରେ ଭାଙ୍ଗିଯାଏ, କିନ୍ତୁ ସଭାପତି ମହୋଦୟ ହର୍ଙ୍ଗିଯାଆନ୍ତି ନାହିଁ। ଏପରି 'କୁର୍ସିତୋଡ଼' ସଭାପତି ପାଇଁ 'ତାବଡ଼୍ ତୋଡ଼' (ଲଗ ଲଗ୍) ନୂଆ ସଭାପତି-କୁର୍ସି ମଗେଇବାକୁ ପଡ଼େ। ସଭାର ସୁଦକ୍ଷ ଉଦ୍ୟୋକ୍ତାମାନେ ସବୁବେଳେ ଗୋଟିଏ ଅଧିକା ସଭାପତି-କୁର୍ସି ରିଜର୍ଭ ରଖନ୍ତି; କାରଣ, ବିପଦ ସମୟ ସଭାପତିର ଅନୁମତି ନେଇଆସନ୍ତି ନାହିଁ।

ସଭାପତି ମହୋଦୟ ଦୁଇ ପ୍ରକାରର ହୁଅନ୍ତି। ଗୋଟିଏ ଜନ୍ମିତ ସଭାପତି, ଆରଟି 'ଦେଖା ସୁନ୍ଦର କଖାରୁ ବିଞ୍ଜ' ସଭାପତି।

ସେହିପରି ଜଣେ ଭଦ୍ରଲୋକ କହନ୍ତି ଯେ ଏ ବିଭାଗୀକରଣ ଠିକ୍ ନୁହେଁ । ସଭାପତି ଜନ୍ମରୁ ହୁଅନ୍ତୁ ବା ଦେଖାସୁନ୍ଦର କଥାରୁ ବଡ଼ ହୁଅନ୍ତୁ, ସେ ସବୁ ଅବସ୍ଥାରେ ଦେଖା ସୁନ୍ଦର ହୁଅନ୍ତି । ଏହା ଉପରେ ଦୁଇ କିସମର ସଭାପତି ଗୋଟିଏ କିସମର ଚରିତ୍ର ବିଶିଷ୍ଟ ଅଟନ୍ତି ।

ସେମାନଙ୍କ ଚରିତ୍ରର ତଫସିଲ ଏହି ପ୍ରକାରର ଅଟେ । ଜଣେ ବକ୍ତା ଯେତେବେଳେ ବକ୍ତୃତା ଦିଏ, ସେତେବେଳେ ସେ ତା' ମୁହଁକୁ ନଠେଇ କରି ରହନ୍ତି ଏବଂ କେବେକେବେଳେ ନିଜ ଗର୍ଦ୍ଦନ ବି ହଲଉ ଥାଆନ୍ତି । ଏ ଗର୍ଦ୍ଦନ ବି ଏଇଥିପାଇଁ ହଲା ହୁଏ, କାଳେ ଶ୍ରୋତାମାନେ ଭାବିନେବେ ଯେ 'ସଭାପତି-କୁର୍ସି'ରେ 'ସଭାର ସଭାପତି'ଙ୍କ ବଦଳରେ ତାଙ୍କର ମୂର୍ତ୍ତି ବସିଅଛି । ଏହି ଭ୍ରମକୁ ଦୂର କରିବା ପାଇଁ ସଭାର ସଭାପତିଙ୍କୁ ଆହୁରି ଅଧିକ କେତେଗୁଡ଼ିଏ କର୍ତ୍ତବ୍ୟ ସମ୍ପାଦନ କରିବାକୁ ପଡ଼େ । ଅର୍ଥାତ୍ କେବେ କେବେ ସଭାର ସେକ୍ରେଟେରୀଙ୍କୁ ନିକଟକୁ ଡକାଯାଏ, ଆଉ ତାଙ୍କ କାନରେ ପଚରାଯାଏ, "କଅଣ ଆପଣ କୌଣସି ଫଟୋଗ୍ରାଫର୍ ଯୋଗାଡ଼ କରିନାହାନ୍ତି ? ସଭାର କାର୍ଯ୍ୟକ୍ରମ ବଡ଼ ପ୍ରାଣହୀନ ଭାବରେ ଚାଲିଛି । ଶୀଘ୍ର କୌଣସି ଫଟୋଗ୍ରାଫର୍‌କୁ ଧରି ଆଣନ୍ତୁ ।" ଟେବୁଲ ଉପରେ ଥୁଆ ହୋଇଥିବା ପ୍ୟାଡ଼୍‌କୁ ନିଜ ପାଖକୁ ଟାଣି ନିଏ ଆଉ ବକ୍ତା ଆଡ଼କୁ ଚାହିଁ ଚାହିଁ କିଛି ଲେଖିଲାଗେ । ଶ୍ରୋତାମାନେ ଭାବନ୍ତି, ସେ ନିଶ୍ଚୟ କିଛି ମୁଖ୍ୟ ବିଷୟ ଲେଖି ପକାଉଛି, କିନ୍ତୁ ଆପଣ ଭୁଲ ବୁଝନ୍ତୁ ନାହିଁ, କାରଣ ସେ ସେତେବେଳେ ପ୍ରକୃତରେ ସେହି ଫୁଲମାଳଗୁଡ଼ିକର ହିସାବ ରଖିବାରେ ମଜ୍‌ଗୁଲ ଥାଏ, ଯେଉଁ-ଗୁଡ଼ିକ ତା ବେକରେ ପିନ୍ଧେଇ ଦିଆଯାଇଥିଲା । ତା'ପରେ ସେ ପ୍ୟାଡ଼କୁ ଫେଲିଦିଏ ଓ ଶ୍ରୋତାମାନଙ୍କ ଆଡ଼େ ଟିକିଏ ଅର୍ଦ୍ଧ ଦୃଷ୍ଟି ପକେଇ ନିଏ । ଆଗକୁ ସେମାନଙ୍କର ସଂଖ୍ୟା ଠଉରେଇ ନିଏ ଓ ମନେ ମନେ ଆନନ୍ଦ ମଧ୍ୟ ହୁଏ । ଅନେକ ସଭାପତି ତାଙ୍କ ସ୍ତ୍ରୀକୁ ମଧ୍ୟ ସାଙ୍ଗରେ ନେଇ ଆସନ୍ତି । ଯେପରିକି ସ୍ତ୍ରୀ'ମାନଙ୍କ ଉପରେ ସେମାନଙ୍କ ଭାରି ଭରସା ହୋଇ ରହିବ । ସମୟ ସମୟରେ ସେମାନେ ଆପଣା ଆପଣାର ସ୍ତ୍ରୀଙ୍କ ଆଡ଼େ ଏପରି ଭାବରେ ଚାହାନ୍ତି, ଯେପରିକି ସେ ଆପଣା ସ୍ତ୍ରୀକୁ ପ୍ରଥମଥର ପାଇଁ ଦେଖୁଛି, ଯେପରିକି ସେ ତାକୁ ଚହ୍ନି ନ । ସଭାପତି ମହୋଦୟଙ୍କ ସ୍ତ୍ରୀ ସମ୍ମୁଖରେ ବସି ରକ୍ତିମ ହେଉଛନ୍ତି ସେ ଲାଜେଇ ଯାଉଥାଏ କିନ୍ତୁ

କିଛି କରିପାରୁ ନଥାଏ । କାରଣ, ସଭାପତି-କୁର୍ସି ପର୍ଯ୍ୟନ୍ତ ପହଞ୍ଚିବା ତା’ର ସାଧ ନଥାଏ ଆଉ ସଭାପତି ମହୋଦୟ ମଧ ଜାଣେ କି, ଯେପର୍ଯ୍ୟନ୍ତ ସେ ସଭାପତି ଆସନରେ ବିରାଜମାନ କରୁଛନ୍ତି, ସେ ପର୍ଯ୍ୟନ୍ତ ସବୁ ପ୍ରକାର ଆପଦ ତଥା ଆପଣା ସ୍ତ୍ରୀ’ଠାରୁ ମଧ ନିରାପଦ ଅଛି ।

ସାଧାରଣତଃ ସଭାମାନଙ୍କରେ ସେ ଦୃଶ୍ୟଟି ବଡ଼ ଚିତ୍ତାକର୍ଷକ ହୁଏ, ଯେତେବେଳେ ସଭାପତି ମହୋଦୟଙ୍କୁ ହାର ପିନ୍ଧେଇ ଦିଆଯାଏ; ଏବଂ ସଭାରେ ପରମ୍ପରା ଅନୁଯାୟୀ ଆଗେ ସଭାପତିଙ୍କୁ ହାର ପିନ୍ଧେଇ ଦିଆଯାଏ; ତେବେ ଯାଇ ସଭାର କାର୍ଯ୍ୟକ୍ରମ ଆରମ୍ଭ ହୁଏ । ମୋର ବିଶ୍ୱାସ କି ଏ ପରମ୍ପରା ମଧ ‘ସଭାର ସଭାପତି’ଙ୍କ ତରଫରୁ ସୃଷ୍ଟି । କାରଣ, ସଭାର ଆରମ୍ଭ ପୂର୍ବରୁ ହାର ପିନ୍ଧେଇ ଦେଲେ, ମନରେ ଟିକିଏ ଶାନ୍ତି ଆସିଯାଏ; ନଚେତ୍ ଏ ଭୟ ମଧ ଥାଏ ଯେ ସଭାପରେ ଉଦ୍ୟୋକ୍ତାମାନେ ହାର ବିଷୟରେ ନୀରବ ଓ କିଛି ନଜାଣିଲାଭଳି ହୋଇଯିବେ । ଗରଜ ମେଣ୍ଟିବା ପରେ କାହାର କଅଣ ଦରକାର, କିଏ ବୁଝୁଛି । ସେଇଥିପାଇଁ ସଭାପତିମାନେ ଆଗେ ହାର ପିନ୍ଧନ୍ତି ଆଉ ପରେ ସଭାକାର୍ଯ୍ୟ ଆରମ୍ଭ କରନ୍ତି । କହିବାକୁ ଗଲେ ହାର ପିନ୍ଧିବା ପରେ, ସଭାପତି ପାଇଁ ସଭା ଏକପ୍ରକାର ବରଖାସ୍ତ ହୋଇଯାଏ । ବାସ୍, ସେ ସେଠାରେ ଅଦରକାରୀ ଭାବରେ ବସି ରହେ । ଯେତେବେଳେ ତାକୁ ହାର ପିନ୍ଧେଇ ଦିଆଯାଏ, ସେତେବେଳେ ଫଟୋଗ୍ରାଫର୍‌ର ଉପସ୍ଥିତି ନିହାତି ଦରକାର । ଯେ ପର୍ଯ୍ୟନ୍ତ ଫଟୋଗ୍ରାଫର୍ ଆସିନଥାଏ ସେ ପର୍ଯ୍ୟନ୍ତ ସଭାପତି ହାର ଭିତରେ ନିଜ ଗଳା ପୂରାଏ ନାହିଁ । ମୁଁ ଗୋଟିଏ ସଭାର ପ୍ରତ୍ୟକ୍ଷ ଦ୍ରଷ୍ଟା, ଯେଉଁଥିରେ ସଭାପତିର ବେକ ହାର ଆଡ଼କୁ ଆଗଉଥିଲା ଆଉ ହାର ବେକ ଆଡ଼କୁ ଆଗଉଥିଲା । ଅଚାନକ ଫଟୋଗ୍ରାଫର୍‌ର କ୍ୟାମେରାରେ କିଛି ବିଗିଡ଼ିଗଲା । ଯେମିତି ସଭାପତିଙ୍କୁ ଏ ବିଗିଡ଼ା କଥା ଜଣାପଡ଼ିଗଲା ସେ ଗୋଟାଏ ଝିଟିକା ମାରି, ଆପଣା ବେକକୁ ହାର ଭିତରୁ କାଢ଼ିନେଲା, କିନ୍ତୁ ସଭାର ସେକ୍ରେଟେରୀ ବରାବର ତା ବେକକୁ ଅନୁସରଣ କରୁଥାନ୍ତି । ବିଶ୍ୱାସ କରନ୍ତୁ, ‘ଉକ୍ତ ସଭାପତି’ ହାରପିନ୍ଧା ମାମଲାରେ ସେଦିନ ଏପରି ହରକତ କଲେ, ଯେପରିକି ଗୋଟାଏ ଅମାନିଆ ଘୋଡ଼ା ମୁହଁରେ ଲଗାମ ଦେଲାବେଳକୁ କରେ । ଶେଷରେ ଯେତେବେଳେ

କ୍ୟାମେରା ଠିକ୍ ହୋଇଗଲା, ସେତେବେଳେ ସଭାର ସଭାପତିଙ୍କୁ ଚମ୍‌ତ୍କାର କରି, ମନେଇ ହାର ଆଡ଼କୁ ଅଣାଗଲା ଏବଂ ଯେତେବେଳେ କ୍ୟାମେରାର ଫ୍ଲାସ ବଲବ ଜଳି ଉଠିଲା, ସେତେବେଳେ ଲୋକେ ଦେଖିଲେ ଯେ ସଭାପତିର ବେକ ହାର ଭିତରେ ପଶିଯାଇଛି । ସଭାପତି ଯେତେବେଳେ ହାର ପିନ୍ଧିପକାଏ, ସେତେବେଳେ ତା ଓଠରେ ହସ ଖେଳିଯାଏ ଏବଂ ଏହା ଦେଖି ତାକୁ ପିନ୍ଧେଇ ଦିଆଯାଇଥିବା ହାରର ଫୁଲଗୁଡ଼ିକ ଗ୍ଲୁଏଁ ଗ୍ଲୁଏଁ ଝାଉଁଳି ପଡ଼ନ୍ତି ।

ସଭାର ସଭାପତି ସେତିକିବେଳେ ବହୁତ ଖୁସି ହୋଇଯାଆନ୍ତି, ଯେତେବେଳେ ଅଭ୍ୟର୍ଥନା କମିଟିର ସଭାପତି ନିଜ ସ୍ୱାଗତ ସମ୍ଭାଷଣରେ 'ସଭାର ସଭାପତି'ଙ୍କ ଉଚ୍ଚ ଗୁଣାବଳୀର ବର୍ଣ୍ଣନା କରନ୍ତି। ଯେତେବେଳେ ତାର ପ୍ରଶଂସା ହେବାକୁ ଲାଗେ, 'ସଭାର ସଭାପତି' ଜାଣିଶୁଣି କରି ଗ୍ଲାସ ଆଡ଼କୁ ଚାହିଁବାକୁ ଲାଗେ, ଆଉ ଯଦି ସଭା ଆକାଶ ତଳେ ହେଉଥାଏ, ତେବେ ତାରା ଗଣିବାରେ ମଜଗୁଲ୍ ହୋଇଯାଏ । ତାର ଦୃଷ୍ଟି ତ ଉପରକୁ ଥାଏ କିନ୍ତୁ କାନଟା ଅଭ୍ୟର୍ଥନା ସମିତି ସଭାପତିଙ୍କ ଆଡ଼କୁ ମୋଡ଼ିହୋଇ ରହେ । ଏଇଟା ସମସ୍ତଙ୍କର ଜାଣିବା ଉଚିତ କି ପ୍ରତ୍ୟେକ ସଭାପତି ବଡ଼ କାର୍ଯ୍ୟବ୍ୟସ୍ତ ଥାଆନ୍ତି । ବିଭିନ୍ନ ପ୍ରକାରର କାର୍ଯ୍ୟ ମଧ୍ୟରୁ ଅଳ୍ପ ସମୟ ବଡ଼ କଷ୍ଟରେ ସେ କାଢ଼ନ୍ତି । ଯଦିଓ ତାଙ୍କର ଆଖପାଖ ଲୋକେ ଭଲଭାବେ ଜାଣନ୍ତି କି ସଭାପତି ମହୋଦୟଙ୍କ ସାମନାରେ ଏକ ବରାଟ ସମୟସମୁଦ୍ରର ସର୍ବଦା ଢେଉ ଖେଳୁଛି ଆଉ ମେହି ସମୁଦ୍ରରେ 'ସଭାପତିତ୍ୱ'ର ସ୍ଥାନ କ୍ଷୁଦ୍ର, କ୍ଷୁଦ୍ର ଦ୍ୱୀପପରି ହୋଇଥାଏ, ଯେଉଁଠି 'ସଭାପତି ମହୋଦୟ' କିଛି ସମୟ ପାଇଁ ବିଶ୍ରାମ ନିଏ ।

ସଭାଶେଷରେ ଯେତେବେଳେ 'ସଭାପତି ମହୋଦୟ' ନିଜର ଅଭିଭାଷଣ ପାଇଁ ଠିଆହୁଏ, ସେ ପ୍ରଥମେ ନିଜ ଘଣ୍ଟାକୁ ଦେଖେ; ଶ୍ରୋତାମାନଙ୍କୁ ଏ ସୁଯୋଗ ଦାନକରେ କି ସେ କୁର୍ସିରୁ ଉଠି ମାଇକ୍ରୋଫୋନ ପର୍ଯ୍ୟନ୍ତ ଯିବାଯାଏ ତାଳି ବଜେଇ ପାରିବେ । ପୁଣି ସେ ଅତି ସାଦାସିଧା ଭାବରେ ଅଭ୍ୟର୍ଥନା ସମିତି ସଭାପତିଙ୍କ ଭାଷଣକୁ ନାପସନ୍ଦ କଲାଭଳି ବକ୍ତୃତା ଜାରିକରି କହନ୍ତି—"ଆପଣ ମୋ ବିଷୟରେ ଯାହା କିଛି

କହିଲେ, ତାହା ନଗଣ୍ୟର ଅଧିକ ମୂଲ୍ୟାୟନ ପରି ହୋଇଅଛି । କାରଣ, ଅଧମ ଏତେ ବି ଯୋଗ୍ୟ ନୁହେଁ କି ଯାହାକୁ କୌଣସି ସଭାରେ ଯୋଗ ଦେବାକୁ ନିମନ୍ତ୍ରଣ କରାଯିବ । ସେ ନିଜ ଭାଷଣରେ ଉଦ୍ୟୋକ୍ତା-ମାନଙ୍କୁ ସଭାର ଉଦ୍‌ଯୋଗ କରିଥିବା ଲାଗି ଶୁଭେଚ୍ଛା ଜଣାନ୍ତି ଆଉ ଭବିଷ୍ୟତରେ ମଧ୍ୟ ଏହିପରି ଭୁଲବାଟରେ ଯିବାଲାଗି ସସ୍ନେହ ପରାମର୍ଶ ଦିଅନ୍ତି; ଆଉ ସଙ୍ଗେ ସଙ୍ଗେ ଏହାମଧ୍ୟ କହନ୍ତି କି, ସେ ସର୍ବଦା ଉଦ୍ୟୋକ୍ତାମାନଙ୍କୁ ସାହାଯ୍ୟ କରିବାଲାଗି ତିଆର ଅଛନ୍ତି । ଏ ସାହାଯ୍ୟର ଅର୍ଥ ହେଉଛି କି ଆସନ୍ତା ଥର ପାଇଁ ସଭାପତିତ୍ୱ କରିବାଲାଗି ସେ ତିଆର ଅଛି ।

ସଭାର ସଭାପତିଙ୍କ ଏପରି ଭଲ ଗୁଣ ଅଛି ଯେ, ସେ ପ୍ରତ୍ୟେକ ବିଷୟ ଉପରେ ନିଜର ମତାମତ ଦେଇପାରନ୍ତି । ଗୋଟିଏ ସଭାରେ ସେ ପୋଲ୍‌ଟ୍ରି ଫାର୍ମିଂ ଉପରେ ସ୍ୱମତ ପ୍ରକାଶ କରେ ତ, ଦୁସରା ସଭାରେ ମାଛଚାଷର ଗୁରୁତ୍ୱ ଉପରେ ଆଲୋକପାତ କରେ । କେଉଁଠି ହିଆସିଲ ଶିଳ୍ପର ଉପାଦେୟତା ବର୍ଣ୍ଣନା କରେ, କେଉଁଠି ସାବୁନ ତିଆରି ବିଷୟରେ ମତାମତ ଦିଏ । ଆପଣ ବିଶ୍ୱାସ କରନ୍ତୁ ମଣିଷ ଯଦି ଥରେ 'ସଭାର ସଭାପତି' ହୋଇଯାଏ, ତେବେ ସାରାଜୀବନ ସେ ସଭାର ସଭାପତି ହୋଇ ରହେ । ସଭାପତି ଆସନ ତା'ଠାରେ ଲାଗି ରହିଯାଏ ଏବଂ ମାମଲାଟା ଏହିପରି ହୁଏ ଯେ, "ମୁଁ କମ୍ବଳକୁ ଛାଡ଼ିବାକୁ ଚାହୁଁଛି କିନ୍ତୁ କମ୍ବଳ ମୋତେ ଛାଡ଼ୁନି ।'

ମନେରଖନ୍ତୁ, ସଭାପତି ସର୍ବଦା ସଭାକୁ ବିଳମ୍ବକରି ଆସେ । ତାର ଡେରିକରି ଆସିବା ପଛରେ କେତେକ କାରଣ ଅଛି । ସେ ଲୋକ-ମାନଙ୍କୁ ତା ଅପେକ୍ଷାରେ ରଖେଇ, ନିଜର ପ୍ରାଧାନ୍ୟ ତାଙ୍କ ଉପରେ ଜାହିର କରିବାକୁ ଚାହେଁ । ଯଦିଓ ସେ ସନ୍ଧ୍ୟାରେ ହେଉଥିବା ସଭାରେ ସଭାପତିତ୍ୱ କରିବା ପାଇଁ ସକାଳଠାରୁହିଁ ପ୍ରସ୍ତୁତି ଚଳେଇ ଥାଏ । କପଡ଼ାକୁ ଇସ୍ତ୍ରି କରାଏ । ଜୋତା ସାଙ୍ଗରେ ସେ ନିଜର ସଭାପତି ଭାଷଣକୁ ମଧ୍ୟ ପାଲିସ୍ କରାଏ । ଦର୍ପଣ ଆଗରେ ଠିଆହୋଇ, ସଭାପତି ଆସନରେ ବସିବାର ଅନେକ ଠାଣିର ପରୀକ୍ଷା କରେ । ଏହା ସତ୍ତ୍ୱେ ସେ ସଭାରେ ଡେରିରେ ପହଞ୍ଚେ । ବର୍ତ୍ତମାନ ମୋର ସେ ସଭାର ସଭାପତି

ବାଷ୍ପୁରେ ଏକ ମଜା କଥା ମନେ ପଡ଼ୁଛି, ଯାହାକୁ କି ଜୀବନରେ ପ୍ରଥମ ଥର ପାଇଁ ସଭାର ସଭାପତି ହେବାପାଇଁ ସୁଯୋଗ ମିଳିଥିଲା । ସେ ନିଜର ସଭାପତିତ୍ୱ ପାଇଁ ଖୁବ୍ ଯୋଗାଡ଼ କଲା କିନ୍ତୁ ସଭାରେ ବହୁତ ଡେରିରେ ପହଞ୍ଚିଲା । ଉଦ୍ୟୋକ୍ତାମାନେ ବହୁ ସମୟ ଧରି ଅପେକ୍ଷା କରିବା ପରେ, ଏକ 'ରେଡ଼ିମେଡ୍' ସଭାପତିର ସେବା ଗ୍ରହଣ କଲେ ଆଉ ସଭାପତିତ୍ୱର ଦାୟିତ୍ୱ ତାକୁ ସମର୍ପି ଦେଲେ । ପ୍ରଥମ ସଭାପତି ଏଥିରେ ବଡ଼ ନାରାଜ ହେଲା । ଉଦ୍ୟୋକ୍ତାମାନେ ଯେତେବେଳେ ତାକୁ ଡେରିରେ ଆସିବାର କାରଣ ପଚାରିଲେ, ସେ କହିଲା—"ଭାଇ ! ମୁଁ ପ୍ରକୃତରେ ସଭାକାର୍ଯ୍ୟରେ ହିଁ ବ୍ୟସ୍ତ ଥିଲି । ଯେହେତୁ ଏ ସଭା ମୋ ସଭାପତିତ୍ୱରେ ହେବାର ଥିଲା, ଏଥିଲାଗି ସାଧାରଣ ସଭାର ପୋଷ୍ଟର ସବୁ କାନ୍ଥବାଡ଼ରେ ଲଗାଉ ଥିଲି । ପୋଷ୍ଟର ଲଗାରୁ ଫୁରୁସତ୍ ମିଳିବା ମାତ୍ରେ ମୁଁ ସଭାକୁ ଆସିଲି ।"

ସବୁ ସ୍ଥାନରେ ଆପଣଙ୍କୁ ଏଭଳି କେତେକ ବ୍ୟକ୍ତି ନିଶ୍ଚୟ ମିଳିବେ, ଯେଉଁମାନେ କି 'ସଭାପତିତ୍ୱ'ର ବେଉସା କରୁଅଛନ୍ତି; ଆଉ ଯେଉଁଠି 'ସଭାର ସଭାପତି'ଙ୍କ ସଂଖ୍ୟା ବହୁତ ହୁଏ, ସେଠାରେ ସଭାପତିତ୍ୱର ସମସ୍ୟା ନେଇ ଝଗଡ଼ା ମଧ୍ୟ ଠିଆ ହୋଇଯାଏ । 'ସଭା-ସଭାପତି'ଙ୍କ ସଂଖ୍ୟାଧିକ୍ୟର ଏହାହିଁ ପ୍ରମାଣ କି, ଦେଶର ଲୋକସଂଖ୍ୟା ବଢ଼ୁଛି ଆଉ 'ସଭା-ସଭାପତି'ଙ୍କ ବେରୋଜଗାରିକୁ ଦୂର କରିବା ନିହାତି ଦରକାର ଯେ ଆମେ ଗୋଟିଏ ସହର ପାଇଁ "ଦୁଇଟା ବା ତିନିଟା ସଭାପତି ବାସ୍"ର ଆଇନ୍ ଅନୁଯାୟୀ କାର୍ଯ୍ୟ କରିବା ।



# ରେଳବାଇ ମନ୍ତ୍ରୀ ଯାତ୍ରୀ ବନିଗଲେ

ହଠାତ୍ ଦିନେ ରେଳବାଇ ମନ୍ତ୍ରୀ ସେକ୍ରେଟେରୀଙ୍କୁ ଡାକି କହିଲେ—"ଶୁଣ, କାଲି ମୁଁ ଛଦ୍ମବେଶରେ ଏକ ସାଧାରଣ ଯାତ୍ରୀ ଭାବରେ ଥାର୍ଡକ୍ଲାସ କମ୍ପାର୍ଟମେଣ୍ଟ୍‌ରେ ଯାତ୍ରା କରିବାକୁ ଚାହୁଁଛି । ତୁମକୁ ବି ବେଶ ବଦଳେଇ ମୋ ସହିତ ଯିବାକୁ ହେବ ।" ସେକ୍ରେଟେରୀ ଆଖି ମିଟିମିଟି କରି ମନ୍ତ୍ରୀଙ୍କ ଆଡ଼େ ଚାହିଁଥା'ନ୍ତି । ସେ ଭାବିପାରିଲେ ନାହିଁ ଯେ, ତାଙ୍କର ବେଶ ବଦଳାଇବା କି ଦରକାର । ବେଶ ବଦଳାଇବା ତ କେବଳ ମନ୍ତ୍ରୀଙ୍କ କାମ ।

ତଥାପି ସେ ଡରି ଡରି କହିଲେ—"ହଜୁର, ଖରାପ ନଭାବିବେ ତ ଗୋଟିଏ ଅନୁରୋଧ କରନ୍ତି । ଆପଣ ତ ରେଳବାଇ ମନ୍ତ୍ରୀ ଅଟନ୍ତି । ଆପଣଙ୍କ ଶତ୍ରୁ ରେଳରେ ଭ୍ରମଣ କରନ୍ତୁ । ରେଳମନ୍ତ୍ରୀ ତ ସବୁବେଳେ ଉଡ଼ାଜାହାଜରେ ଭ୍ରମଣ କରନ୍ତି । ଆପଣ ତ ବର୍ତ୍ତମାନ ମନ୍ତ୍ରୀଗାଦିରେ ବିରାଜମାନ ହୋଇଛନ୍ତି । ପୁନଶ୍ଚ ସାଧାରଣ ନିର୍ବାଚନର ମଧ୍ୟ ବହୁ ଦୂରରେ ରହିବର୍ତ୍ତି ନାହିଁ । ଏଥିରେ ଆପଣଙ୍କ ଉପରେ କି ବିପଦଟା ପଡ଼ିଯାଇଛି ଯେ ଆପଣ ରେଳଯାତ୍ରା କରିବେ ।"

ମନ୍ତ୍ରୀ କହିଲେ—"ତୁମେ ବେଶି ବକ୍‌ବାକ କରନାହିଁ । ଅନ୍ତତଃ ମୋତେ ମୋର ବିଭାଗର ଖବର ଅନ୍ତର ଜାଣିବା ନିହାତି ଦରକାର ।" ସେକ୍ରେଟେରୀ ଥରି କଣ୍ଠରେ କହିଲେ—"ହଜୁର, ଆପଣଙ୍କ ଆଜ୍ଞା ମୋର ଶିରୋଧାର୍ଯ୍ୟ । କିନ୍ତୁ ମୋ ମତରେ ମନ୍ତ୍ରୀ ନିଜ ବିଭାଗ ସମ୍ପର୍କରେ ଯେତେ ଇଚ୍ଛା କଲେ ବି ଜାଣିପାରନ୍ତି ନାହାନ୍ତି । ଏହି କିଛିଦିନ ତଳେ ଆମ ଖାଦ୍ୟମନ୍ତ୍ରୀ ଦୁର୍ଭିକ୍ଷ ପଡ଼ିଥିବା ଅଞ୍ଚଳ ପରିଦର୍ଶନରେ ଯାଇଥିଲେ । ସେ ମଧ୍ୟ ସଠିକ ଅବସ୍ଥା ଜାଣିବାକୁ ଇଚ୍ଛା କରୁଥିଲେ । ସେଠାରୁ ଫେରି ସେ କହିଲେ—'ଦୁର୍ଭିକ୍ଷ ଅଞ୍ଚଳରେ କେଉଁଠାରେ ହେଲେ

ଦୁର୍ଭିକ୍ଷର ଗନ୍ଧ ମିଳିଲା ନାହିଁ; କାରଣ ମୋତେ ତିନ ବଖତ ଖାନା ନିୟମିତ ଭାବରେ ମିଳୁଥିଲା । ବରଂ ଅନ୍ୟ ପ୍ରଦେଶ ତୁଳନାରେ ମୋତେ ଏଠିକାର ଖାଦ୍ୟ ଅଧିକ ସୁସ୍ୱାଦୁ ମନେହେଲା । ତେବେ ଦୁର୍ଭିକ୍ଷ ରହିଲା କେଉଁଠି ? ଏଥିରୁ ଜଣାଯାଉଛି ଯେ, ଏହି ଦୁର୍ଭିକ୍ଷଜନରବ ବିରୋଧୀ ଦଳର ଏକ ଚାଲ୍ ।"

ରେଳମନ୍ତ୍ରୀ ସେକ୍ରେଟେରୀଙ୍କ କଥା ନଶୁଣିଲା ଭଳି କହିଲେ— "ଦେଖ, ତୁମେ ମୋର ସେକ୍ରେଟେରୀ, ମୁଁ ତୁମର ନୁହେଁ । ମୁଁ ଯାହା କହୁଛି, ତୁମକୁ ତାହା ପାଳନ କରିବାକୁ ହେବ ।"

ସେକ୍ରେଟେରୀ ନିରୁତ୍ତର ହେଲେ । ସେ ଜାଣିଗଲେ ଯେ ବର୍ତ୍ତମାନ ଆଉ କିଛି କହିବା ଅର୍ଥ ଚାକିରୀକୁ ବିପଦରେ ପକାଇବା । ତେଣୁ ସେ ଚୁପ୍‌ଚାପ୍ ମନ୍ତ୍ରୀଙ୍କ କୋଠରିରୁ ବାହାରିବାକୁ ଲାଗିଲେ ।

ମନ୍ତ୍ରୀ ଶେଷଥର ପାଇଁ ମନେପକାଇ ଦେଇ ତାଙ୍କୁ କହିଲେ— "ଆଜି ରାତି ଠିକ୍ ଆଠଟା ବେଳେ ଷ୍ଟେସନରେ ପହଞ୍ଚିବ ।" ସେକ୍ରେ-ଟେରୀ ପଚାରିଲେ—"ହଜୁର ଏତିକି କହନ୍ତୁ, ଆମେ ଟିକେଟ୍ କି ବିନା ଟିକେଟ୍‌ରେ ଭ୍ରମଣ କରିବା ?"

ମନ୍ତ୍ରୀ କହିଲେ—"ତା'ର ଫଇସଲା ସେହି ସମୟରେ ହେବ ।"

× × ×

ମନ୍ତ୍ରୀ ହାରିହନ ବେଶ ବଦଳାଇବାରେ ଲାଗିଥା'ନ୍ତି । ସେ ନିଜ ବେଶ ବଦଳେଇ ବଦଳେଇ ସନ୍ଧ୍ୟାବେଳକୁ ନିଜର ପ୍ରକୃତ ଅବସ୍ଥାକୁ ଆସିଲେ । ଦର୍ପଣରେ ନିଜର ଚେହେରା ଯେତେବେଳେ ଦେଖିଲେ, ତାଙ୍କୁ ଜଣାଗଲା ସତେ ଯେମିତି ସେ ନିଜର ଅସଲ ରୂପ ଦେଖୁଛନ୍ତି । ଜୀବନ ଭିତରେ ଆଜି ସେ ନିଜର ପ୍ରକୃତ ରୂପ ଦେଖି କିଛି ସମୟ ପାଇଁ ଆନନ୍ଦ ଅନୁଭବ କଲେ । ସନ୍ଧ୍ୟାରେ ସେ ଯେତେବେଳେ ଆଠଟାଣିଟିଏ ଧରି ଷ୍ଟେସନରେ ପହଞ୍ଚିଲେ ଏବଂ ଆଟାଚକେସ୍‌କୁ ସେକ୍ରେଟେରୀଙ୍କ ହାତକୁ ବଢ଼େଇଲେ, ସେ ତାଙ୍କୁ ଆଖି ଦେଖାଇ କହିଲେ—"କେମିତିଆ ଅଭଦ୍ର ଲୋକ ହେ, ତୁମେ କଅଣ ମୋତେ

ତୁମର କୁଲବୋଲି ଭାବିଲ କି ! ନ ଜାଣେ କେତେ ଅଜବ୍ ଅଜବ୍ ଲୋକ ଆସି ଜୁଟୁଛନ୍ତି ।" ମନ୍ତ୍ରୀ ମହାଶୟ ହଠାତ୍ ମନ୍ତ୍ରୀ ହୋଇଯାଇ କହିଲେ—"ଦେଖ ବାବୁ, ଏମିତିଆ ଅଭଦ୍ରାମି କରନାହିଁ । ମୁଁ ତୁମର ମନ୍ତ୍ରୀ ।"

ସେକ୍ରେଟେରୀ ମନ୍ତ୍ରୀଙ୍କ ଆଡ଼କୁ ଗାରଚଡ଼େଇ ଚାହିଁଲେ; ପୁଣି ପ୍ରଶଂସାସୂଚକ ଅନୁଚ୍ଚ ଗଳାରେ କହିଲେ—"ହଜୁର ଆପଣ ! ଭଗବାନଙ୍କ ଋଣ, ଜୀବନରେ ପ୍ରଥମ ଥର ପାଇଁ ଆଜି ଆପଣ ଆମ ଭିତରୁ ଜଣେ ପରି ଦେଖାଯାଉଛନ୍ତି । ଯଦି ଏହାପରେ ଆଉ ଆପଣ ବେଶ ନ ବଦଳାନ୍ତେ, ତେବେ କେତେ ବଢ଼ିଆ ହୁଅନ୍ତା ।"

ମନ୍ତ୍ରୀ କହିଲେ—"ଚୁଲି, ଆଉ କଥା କୁହ ନାହିଁ । ଆମକୁ ପ୍ରଥମେ ଟିକେଟ୍ କରିବାକୁ ହେବ ।"

ସେକ୍ରେଟେରୀ କହିଲେ—"ଦିଅନ୍ତୁ, ଟିକେଟ ପାଇଁ ପଇସା ଦିଅନ୍ତୁ ।" ସେ କହିଲେ—"ନା, ଟିକେଟ ମୁଁ ନିଜେ କିଣିବି ।"

ସେକ୍ରେଟେରୀ କହିଲେ—"ହଜୁର, ଏ ଇଲେକ୍ସନ ଟିକେଟ୍ ନୁହେଁ, ଏଇଟା ରେଳ ଟିକେଟ୍ । ଏହା ଏତେ ସହଜରେ ମିଳେନାହିଁ । ଏଥିପାଇଁ ରୀତିମତ ଫ୍ରିଷ୍ଟାଇଲ୍ କୁସ୍ତି କରିବାକୁ ପଡ଼େ ।"

ସେ କହିଲେ—"ତୁମେ ଫ୍ରିଷ୍ଟାଇଲ୍ କୁସ୍ତି ବିଷୟରେ ଚିନ୍ତା କରନ । ପାର୍ଟିର ଗଣ୍ଡଗୋଳିଆ ସଭାମାନଙ୍କରେ ଭାଗ ନେଇ କୁସ୍ତି ଲଢ଼େଇ କୌତୁକ ଅନେକଟା ଜାଣିଗଲିଣି ।" ଏହା କହି ମନ୍ତ୍ରୀ ମହାଶୟ ଯାତ୍ରୀମାନଙ୍କ ଧାଡ଼ି ଭାଙ୍ଗି ଟିକେଟ୍‌ଘର ଝରକାଆଡ଼କୁ ଆଗେଇଲେ ।

ଲୋକେ ଚିଲେଇଲେ—"ମହାଶୟ, ଧାଡିରେ ଆସନ୍ତୁ । ଆମେ ଏଠି ଘଣ୍ଟାଏ ହେଲା ଠିଆ ହୋଇଛୁ । ଆପଣ କୁଆଡ଼େ ମାଡ଼ି ଯାଉଛନ୍ତି ।"

ମନ୍ତ୍ରୀ କହିଲେ—"ଯେତେବେଳେ ସାରା ଦେଶ ଆଗେଇ ଚାଲିଛି, ସେତେବେଳେ ମୋର ମଧ୍ୟ ଆଗେଇଯିବାର ଅଧିକାର ଅଛି, ଆଜି ଜୀବନର ଅର୍ଥ ହେଉଛି, ସବୁବେଳେ ଆଗେଇଯିବା ।" ସେ ଆଗେଇ-ବାକୁ ଯାଉଥିଲେ, ଚାରି ପାଞ୍ଚ ଜଣ ଯାତ୍ରୀ ତାଙ୍କୁ ପଛଆଡ଼କୁ ଘୋଷାଡ଼ି ଆଣି କହିଲେ, "ମହାଶୟ, ଜୀବନରେ ଆଗେଇ ଯାଆନ୍ତୁ କିନ୍ତୁ ଏଇଟା ଯେ ଧାଡ଼ି । ଏଠି ମଣିଷ ଘଣ୍ଟାକେ ଇଞ୍ଚେ ଆଗାଏ । ଆପଣ ଏତିକି ଜାଣନ୍ତି ନାହିଁ ।"

ତାଙ୍କ ସେକ୍ରେଟେରୀ ଖୁବ୍ ହୁସିଆର ଥିଲେ । ମନ୍ତ୍ରୀଙ୍କ ସେକ୍ରେଟେରୀ ହେବା ପୂର୍ବରୁ ତାଙ୍କର ରେଳଯାତ୍ରାର ଅଭିଜ୍ଞତା ଥିଲା । ସେ ଧାଡ଼ିର ଆଗକୁ ଯାଇ ଜଣକ ସହ କଥାବାର୍ତ୍ତା ହେଲେ ଏବଂ ମନ୍ତ୍ରୀଙ୍କୁ ଅଲଗା ଡାକିନେଇ କହିଲେ—"ମୁଁ ଧାଡ଼ି ଆଗରେ ରହିବାର ବନ୍ଦୋ-ବସ୍ତ କରି ଦେଇଛି । ଆପଣ ଜଣପିଛା ଟଙ୍କାଏ ଲେଖାଏଁ ଦେଲେ, ଆଗର ଦୁଇଜଣ ନିଜ ଜାଗା ଛାଡ଼ି ଦେବାକୁ ପ୍ରସ୍ତୁତ ଅଛନ୍ତି ।"

ମନ୍ତ୍ରୀ ଖୁବ୍ ଖୁସି ହୋଇ କହିଲେ—"ବାଃ ! ଏ ତ ବଡ଼ ବଢ଼ିଆ ବ୍ୟବସ୍ଥା । ମୋତେ ଜଣା ନଥିଲା ଯେ ରେଳବାଇ ପ୍ରଶାସନ ଜନସାଧାରଣଙ୍କ ସୁବିଧା ପାଇଁ ଏପରି ବ୍ୟବସ୍ଥା ମଧ୍ୟ କରିଦେଇଛନ୍ତି । ମନ୍ତ୍ରୀ ଦୁଇଟଙ୍କା ଦେଲେ ଏବଂ ସେକ୍ରେଟେରୀଙ୍କ ସହ ଧାଡ଼ି ଆଗରେ ଠିଆ ହୋଇଗଲେ । କିନ୍ତୁ ସେଠାରେ ଟିକେଟ୍ ଦେବାଲୋକ କେହି ନଥିଲେ ।

ମନ୍ତ୍ରୀ ପଚାରିଲେ—"ଟିକେଟ୍ ଦେଲିବାଲା କୁଆଡ଼େ ଗଲେ ?"

କିଏ ଜଣେ କହିଲା—"ଯେଉଁ ଲୋକ ଏ ଯାଏ ଟିକେଟ୍ ଦେଉଥିଲା, ତା ଡିଉଟି ଶେଷ ହୋଇଯାଇଛି । ସେ ଆଉ ଟିକେଟ୍ ଦେବନି । ତା' ସ୍ଥାନରେ ନୂଆ ଲୋକ ଆସିବ ଏବଂ ଯାହାର ଏଠାକୁ ଆସିବାର କଥା, ସେ ଏହିକ୍ଷଣି ଫୋନକରି ଜଣାଇଛି, ଯେ ସେ ତା ସାହି ବସଷ୍ଟାଣ୍ଡର ଧାଡ଼ିରେ ଠିଆହୋଇ ବସକୁ ଅପେକ୍ଷାକରି ରହିଛି । ବସ୍ ଧାଡ଼ିରେ ତାଙ୍କୁ ଯେତେବେଳେ ଟିକେଟ୍ ମିଳିବ, ସେ ଷ୍ଟେସନକୁ ଆସିବେ ଏବଂ ଆମକୁ ଏ ଧାଡ଼ିରୁ ଉଦ୍ଧାର କରିବେ ।"

ମନ୍ତ୍ରୀ କହିଲେ—"ତା ମାନେ ଏ ରେଳବାଇ ଟିକେଟ୍ କ୍ଲର୍କଙ୍କୁ ବସ୍ ଟିକେଟ୍ ନ ମିଳିବାଯାଏ ଆମକୁ ରେଳ ଟିକେଟ୍ ମିଳିବ ନାହିଁ ?"

ସେକ୍ରେଟେରୀ କହିଲେ—"ହଜୁର୍, ଆମ ଦେଶରେ ସବୁକାମ ଧାଡ଼ିରେ ହିଁ ହୁଏ । ଆଜି ଲୋକେ ଉନଯାକ ଗୋଟିଏ ଧାଡ଼ିରୁ ବାହାରି ଆଉ ଗୋଟିଏ ଧାଡ଼ିରେ ଠିଆ ହୁଅନ୍ତି । ଏଇଥିପାଇଁ ତ ଆମ ଦେଶକୁ ସମାଜବାଦ ଆସିବାରେ ବିଳମ୍ବ ହେଉଛି ।"

ଏହି ଅବସରରେ ଟିକେଟ୍‌କ୍ଲର୍କ ଆସି ପହଞ୍ଚିଗଲେ । ମନ୍ତ୍ରୀ ମହାଶୟ ଚଟାପଟ୍ ଝରକା ଭିତରେ ହାତ ପୂରେଇ ଦେଲେ ।

କ୍ଲର୍କ ପଚାରିଲେ—"ଆପଣଙ୍କର କେଉଁଠାକୁ ଟିକେଟ ଦରକାର ।"

ମନ୍ତ୍ରୀ ପଚାରିଲେ—"ଏ ଗାଡ଼ି କେଉଁଯାଏ ଯିବ ?"

କ୍ଲର୍କ କହିଲେ—"ରାସ୍ତାରେ କୌଣସି ଦୁର୍ଘଟଣା ନଘଟିଲେ, ଏହା ବମ୍ବେଯାଏ ଯିବ ।"

ମନ୍ତ୍ରୀ କହିଲେ—"ତେବେ ବମ୍ବେଯାଏ ମୋତେ ଦୁଇଟି ଟିକେଟ୍ ଦିଅ ।

× × ×

ମନ୍ତ୍ରୀ ଏବଂ ତାଙ୍କ ସେକ୍ରେଟେରୀ ଟିକେଟ୍ ନେଇ କ୍ଷିପ୍ରଗତିରେ ପ୍ଲାଟ୍‌ଫର୍ମରେ ଯାଇ ପହଞ୍ଚିଲେ । ଗାଡ଼ି ଠିଆ ହୋଇଥିଲା । ମନ୍ତ୍ରୀ ମହାଶୟ ଗୋଟିଏ ଡବା ପାଖରେ ଠିଆ ହୋଇଗଲେ ଏବଂ ଦ୍ୱାରଦେଇ ଭିତରକୁ ପଶିବାକୁ ଚେଷ୍ଟା କଲେ ।

ସେକ୍ରେଟେରୀ ପାଟିକରି କହିଲେ—"ଆଜ୍ଞା, ଆପଣ ଭୁଲ୍‌-ବାଟରେ ଡବାରେ ପଶୁଛନ୍ତି ।"

ମନ୍ତ୍ରୀ କହିଲେ—"କନ୍ତୁ ଡବାରେ ପଶିବାପାଇଁ ରାସ୍ତା ତ ଏଇ।"

ସେଣ୍ଟେଷଣ୍ଟେଷା କହିଲେ—"ହଜୁର୍, ଥାର୍ଡ଼କ୍ଲାସ ଡବାରେ କେବଳ ପବନ ଯା'ଆସ କରିବାଲାଗି କବାଟ ଥାଏ। କବାଟକୁ ଲୋକେ କେବଳ ଇମରଜେନ୍‌ସି ବେଳେ ବ୍ୟବହାର କରନ୍ତି। ନଚେତ୍ ଡବା ଭିତରକୁ ଯିବାପାଇଁ ଝିଡ଼କି ହେଉଛି ପ୍ରକୃତ ରାସ୍ତା। ଏଣୁ ଏଗୁଡ଼ିକ ବହୁଜାଗାରେ ଲଗାଯାଇଛି। ପ୍ରକୃତରେ କହିବାକୁଗଲେ ଏ ଝିଡ଼କି-ଗୁଡ଼ିକ ବି ଭିତରକୁ ଯିବାର ଠିକ ରାସ୍ତା ନୁହେଁ। ବରଂ ସିନ୍ଧିକରି ତା ଭିତରକୁ ପଶିବା ଉଚିତ। ମୋତେ କିନ୍ତୁ ସିନ୍ଧିକରିବା ଉପାୟ ଜଣାନାହିଁ।"

ମନ୍ତ୍ରୀ ମହାଶୟ ଶୀଘ୍ର ଗୋଟିଏ ଝରକା ପାଖରେ ପହଞ୍ଚିଗଲେ।

ସେଣ୍ଟେଷଣ୍ଟେଷା କହିଲେ—"ହଜୁର୍, ଆପଣ ମୋତେ ଟେକି ଭିତରକୁ ଫୋପାଡ଼ି ଦିଅନ୍ତୁ।"

ମନ୍ତ୍ରୀ କହିଲେ—"କାହିଁ ଭିତରେ ତ ଆଦୌ ଜାଗା ନାହିଁ।"

ସେଣ୍ଟେଷଣ୍ଟେଷା କହିଲେ—"ଆପଣ ଚିନ୍ତା କରନ୍ତୁ ନାହିଁ। ରେଲଡବା ଭିତରେ ଯେତେ ଖୁନ୍ଦିବ ସେତେ ଜାଗା ମିଳିବ। ଜାକଜୁକ ହେଲେ ପ୍ରେମିକର ହୃଦୟ, ପ୍ରସାରିତ ହେଲେ ବିରାଟ ଜଗତ ପାଲଟିବ। ଦରିଆକୁ ସୋରେଇ ଭିତରେ ପୁରେଇ ଦିଆଯାଏ ଏଇଠି। ଆପଣ ବିଶ୍ୱାସ କରନ୍ତୁ କି ଏଇ ଗୋଟିଏ ଡବାରେ ଆମ ଗାଆଁର ସମସ୍ତେ ସମେଇଯିବେ। ଯାତ୍ରୀକୁ ଖାଲି ଗୋଡ଼ ରଖିବାକୁ ଜାଗା ମିଳିଗଲେ, କିନିଷପତ୍ର ସହ ତା'ର ସବୁକିଛି ତା ଭିତରେ ରହିଯିବ। ଆପଣ ଘାବରନ୍ତୁ ନାହିଁ ବରଂ ନିର୍ଦ୍ଦୟତାରସହ ମୋତେ ଭିତରକୁ ଠେଲି ଦିଅନ୍ତୁ। ନହେଲେ ଗାଡ଼ି ଛୁଡ଼ିଦେବ।"

ମନ୍ତ୍ରୀ ମହାଶୟ ଶୀଘ୍ର ସେଣ୍ଟେଷଣ୍ଟେଷାଙ୍କୁ ଟେକି ବୁଜୁଲାଟି ପରି ଝରକା ଉପରେ ଥୋଇଦେଲେ। ତତକ୍ଷଣାତ୍ ଡବା ଭିତରେ କୋଳାହଳ ଆରମ୍ଭ ହୋଇଗଲା—"ଏହାକୁ ବାହାର କର; ଡବାରେ ଜାଗାନାହିଁ, ଆମ ମୁଣ୍ଡ ଉପରେ କିଅଣ ବସିବ !"

ଦେଖୁ ଦେଖୁ ପୁରା ଡବାର ଲୋକେ ସେଣ୍ଟେଶ୍ୱାଁ ଆଡ଼କୁ ମାଡ଼ିଆସିଲେ । ସମସ୍ତ ଯାତ୍ରୀ ତାଙ୍କୁ ପଦାକୁ ଠେଲିଲାଗିଲେ ଏବଂ ମନ୍ତ୍ରୀ ମହାଶୟ ତାଙ୍କୁ ବାହାରୁ ଭିତରକୁ ଠେଲୁଥାଆନ୍ତି । ମନ୍ତ୍ରୀଙ୍କର ମନେ ନଥିଲା ଯେ ସେ ତାଙ୍କ ସେଣ୍ଟେଶ୍ୱାଁ । ସେତେବେଳେ ତାଙ୍କ ମନ ଭିତରେ ପ୍ରତିହିଂସାର ନିଆଁ ଜଳୁଥାଏ । ସେ ଭାବୁଥିଲେ କପଟ ହେଲେ ଯାତ୍ରୀମାନଙ୍କୁ ପର୍ଯ୍ୟୁଦସ୍ତ କରିବେ ଏବଂ ସେଣ୍ଟେଶ୍ୱାଁଙ୍କୁ ଭିତରେ ପୂରେଇ ଦମ୍ ନେବେ । ଏହାପରେ ଚେଷ୍ଟାରେ ସେ ନିଜ କାନ୍ଧରେ ଏପରି ଏକ ଜୋର ଧକ୍କା ଦେଲେ ଯେ ସେଣ୍ଟେଶ୍ୱାଁ ଡବା ଭିତରକୁ ଗଳିଯାଇ ଗୋଟିଏ ଯାତ୍ରୀର ମୁଣ୍ଡ ଉପରେ ବସିଗଲେ । ଯାତ୍ରୀ ରଡ଼ି ଛାଡ଼ିଲା—ଆବେ ହଟ୍, ଏଠି କଅଣ ବସୁଛୁ, ଏଠି ମୁଁ ବସିଛି । ଏହାପରେ ସେଣ୍ଟେଶ୍ୱାଁ ଆଉଜଣେ ଯାତ୍ରୀର ପିଠି ଉପରେ ସବାର ହୋଇଗଲେ । ସେ ପିଠି ଝାଡ଼ିଦେବାରୁ ସେଣ୍ଟେଶ୍ୱାଁ ଯାଇ ଗୋଟିଏ ବୁଢ଼ୀର କୋଳରେ ପଡ଼ିଲେ । ସେତେବେଳକୁ ସେ ପ୍ରାୟ ଅଧା ବେହୋସ୍ ହୋଇ ଯାଇଥିଲେ । ବୁଢ଼ୀ ତାଙ୍କୁ ଗାଳିଗୁଲଜ କଲାରୁ, ସେଣ୍ଟେଶ୍ୱାଁ ନଇଁନ ହୋଇ କହିଲେ—"ଏ ସାରା ଡବାରେ ମୋତେ ମାଆର କୋଳହିଁ ସବୁଠାରୁ ନିରାପଦ ମନେ ହେଉଛି । ମୋତେ ଏଇଠି ଟିକିଏ ବସିବାକୁ ଦେ ।"

ବୁଢ଼ୀ ପାଟିକରି କହିଲା—"ଆରେ ହଟ୍, ତୁ ଯଦି ମୋ କୋଳରେ ବସିବୁ, ତେବେ ମୋର ପୁଅ ଆଉ ତା'ର ଦଶଟି ପିଲା ବସିବେ କେଉଁଠି ?" ସେଣ୍ଟେଶ୍ୱାଁ କଡ଼ ଯାତ୍ରୀର କୋଳ ଖାଲି ଥିବା ଦେଖି ପଚାରିଲେ—"ଭାଇ ସାହେବ, ଆପଣଙ୍କ କୋଳରେ ଆଗରୁ କେହି ବସିଆସୁଛି କି ?"

ଯାତ୍ରୀଟି କହିଲା—"ଦେଖାଯାଉନି, ମୋ କୋଳରେ ଦୁଇଟା ରୁମାଲ ଥୁଆ ହୋଇଛି । ସେ ଦୁ' ଜଣଯାକ ପରା ଗୁଡ଼ା ପିଇବାକୁ ଯାଇଛନ୍ତି ।"

ସେଣ୍ଟେଶ୍ୱାଁ ନିଜକୁ ସମ୍ଭାଳି ଝରକା ପାଖକୁ ଆସିଲେ । ମନ୍ତ୍ରୀ ମହାଶୟ ଝରକା କାଟଦେଇ ଭିତରକୁ ଆସିବାକୁ ଅପେକ୍ଷା କରି

ରହିଥିଲେ । ସେଣ୍ଟେଣ୍ଟେଷ୍ଟି କହିଲେ—"ହଜୁର, ଆପଣ ଝରକା ଉପରେ ଚଢ଼ି ପ୍ରଥମେ ଦୁଇ ଗୋଡ଼ର ଗୋଟିଏ ଗୋଟିଏ ଅଙ୍ଗୁଠି ଭିତରକୁ ପୂରାନ୍ତୁ । ମୁଁ ଧୀରେ ଧୀରେ ଆପଣଙ୍କୁ ଭିତରକୁ ଟାଣି ଆଣିବ ।"

ମନ୍ତ୍ରୀ କହିଲେ—"କିନ୍ତୁ ଭିତରେ ଜାଗା କାହିଁ ?"

ସେଣ୍ଟେଣ୍ଟେଷ୍ଟି କହିଲେ—"ଏ ବି ଗୋଟିଏ କଳା । ପ୍ରାଚୀନ କାଳରେ ଆମ କାରିଗରମାନେ ସୂକ୍ଷ୍ମ ପାଟଲୁଗାର ଗୋଟାଏ ଥାନକୁ ମୁଦି ଭିତରେ ଗଳେଇ ଦେଉଥିଲେ, ଆଉ ଆମେ ଜଣେ ମନ୍ତ୍ରୀଙ୍କୁ ଝରକା ବାଟେ ଗଳେଇ ନେଇ ପାରିବା ନାହିଁ । ଆପଣ ଚିନ୍ତା କରନ୍ତୁ ନାହିଁ । ରେଳଗାଡ଼ିର ଝରକା ଖୁବ୍ ପ୍ରଶସ୍ତ । ମୁଁ ଜୋର ଦେଇ କହି-ପାରେ ଯେ ଦରକାର ପଡ଼ିଲେ ମୁଁ ଇଞ୍ଜିନ୍ ସହ ରେଳଗାଡ଼ିକୁ ଏହି ଝରକା ବାଟ ଦେଇ ଗଳାଇ ଦେଇ ପାରିବ । ଏ ସବୁ ଗହନ ଦର୍ଶନର କଥା । କେତେବେଳେ ବିନ୍ଦୁ ସିନ୍ଧୁରେ ଆଉ କେତେବେଳେ ସିନ୍ଧୁ ବିନ୍ଦୁରେ ପରିଣତ ହୁଏ ।"

ଏତିକିବେଳେ ରେଳଗାଡ଼ି ସିଟି ବଜେଇଲା । ମନ୍ତ୍ରୀ ମହାଶୟ ସଙ୍ଗେ ସଙ୍ଗେ ଝରକା ଉପରେ ଚଢ଼ିଗଲେ ଏବଂ ତାଙ୍କ ଦୁଇପାଦ ତତକ୍ଷଣାତ୍ ଭିତରକୁ ପୂରେଇ ଦେଲେ । ସେଣ୍ଟେଣ୍ଟେରୀ ତୁରନ୍ତ ମନ୍ତ୍ରୀଙ୍କ ପାଦ ଦୁଇଟାକୁ ଧରି ପକେଇଲେ ଏବଂ ପୂରା ସାମର୍ଥ୍ୟ ଖଟେଇ ଭିତରକୁ ଟାଣିବାକୁ ଲାଗିଲେ । ଏହି ସମୟରେ ଯାତ୍ରୀମାନଙ୍କର ଏକ ଜୁଆର ତାଙ୍କ ସାମନା ଦେଇ ଗ୍ଲଲଗଲା । ସେ ପଡ଼ି ଯାଉ ଯାଉ ରକ୍ଷା ପାଇ-ଗଲେ । ସେ ତ ମନ୍ତ୍ରୀଙ୍କୁ ଦେଖି ପାରୁନଥିଲେ । କିନ୍ତୁ ତାଙ୍କ ପାଦ ଯୋଡ଼ିକ ନିଶ୍ଚିତ ରୂପେ ଦେଖି ପାରୁଥିଲେ । ସେ ମନ୍ତ୍ରୀଙ୍କର ପାଦ ଭଲ ଭାବରେ ଚିହ୍ନିଥିଲେ; କାରଣ, ଭିନ୍ନ ଭିନ୍ନ ଭୁଲଭଟକା ପାଇଁ ତାଙ୍କ ଗୋଡ଼ ଧରିବାକୁ ପଡୁଥିଲା । ତାଙ୍କର ଏହି ପାଦ ପ୍ରତି ଭକ୍ତି ଥିଲା, ଘୃଣା ବି ଥିଲା । ପୁଣି ତାଙ୍କ ପାଦ ଯେମିତି ନଜରରେ ପଡ଼ିଲା, ସେ ଖପ୍-କରି ତାକୁ ଧରି ପକାଇ ଚିଙ୍କି ଟାଣିବାକୁ ଲାଗିଲେ । ପୁଣି ବଡ଼ ପାଟି କରି ଚିତାରିଲେ—"ଦୟାକରି କହନ୍ତୁ ଆପଣ କୋଉଠାଏ ଭିତରକୁ ଆସିଲେଣି ।"

ଦୂରରୁ ସ୍ୱର ଶୁଭିଲା—"କେବଳ ଆଣ୍ଠୁଯାଏ ଭିତରକୁ ଗଲିଣି ।"

ସେଙ୍କେଟେଶ୍ୱ କହିଲେ—"ବାସ୍ ବାସ୍, ଆପଣ ଆଉ ଚିନ୍ତା କରନ୍ତୁ ନାହିଁ । ଆପଣ ଅଧାଅଧି ଭିତରକୁ ଆସିଗଲେ, ଆଉ କୌଣସି ଶକ୍ତି ଆପଣଙ୍କୁ ତଳ ବାହାରେ ରଖିପାରିବ ନାହିଁ ।"

ଏହି ଅବସରରେ ଗାଡ଼ି ଚାଲିବାକୁ ଲାଗିଲା । ସେତିକିବେଳେ ସେଙ୍କେଟେଶ୍ୱ ନିଜର ସମସ୍ତ ଶକ୍ତି ଲଗେଇ ମନ୍ତ୍ରୀଙ୍କୁ ଭିତରକୁ ଟାଣି-ନେଲେ । ମନ୍ତ୍ରୀ ଭିତରେ ପହଞ୍ଚିବା ମାତ୍ରେ କହିଲେ, "ମୁଁ ଭିତରକୁ ଆସିଗଲିଣି । ଏବେ ମୋ ଗୋଡ଼ ଛାଡ଼ିଦିଅ ।"

ସେଙ୍କେଟେଶ୍ୱ କହିଲେ—"ପାଦ କେମିତି ଛାଡ଼ିବି ହଜୁର, ମୋ ଦୁଇ କାଖ ଭିତରେ ଦୁଇଟା ଯାତ୍ରୀ ରହିଯାଇଛନ୍ତି ଆଉ ମୋ ବେକ ଉପରେ ଅନ୍ୟ ଜଣେ ଯାତ୍ରୀର ପାଦ ଥୁଆ ହୋଇଛି । ସେ ଝରକା ଉପର ବର୍ଥରେ ଥୁଆ ହୋଇଥିବା ବାକସ ଏବଂ ବାକସ ଉପରେ ଥୁଆ ହୋଇଥିବା ଆଟାଚି ଆଉ ତା ଉପରେ ଥୁଆ ହୋଇଥିବା ବେଡିଂ ଉପରକୁ ଚଢ଼ିବା ଲାଗି ଚେଷ୍ଟା କରୁଛି । ଆପଣ ସେହିପରି ପଡ଼ି ରହନ୍ତୁ । ଯେ ପର୍ଯ୍ୟନ୍ତ ଏ ଗୃହାରୁ ମୁଁ ମୁକ୍ତ ନ ହୋଇଛି, ସେ ପର୍ଯ୍ୟନ୍ତ ଆପଣଙ୍କ ଚରଣ ଯୁଗଳକୁ ଆଶ୍ରା କରି ରହିବାକୁ ସୁଯୋଗ ଦିଅନ୍ତୁ ।" ମନ୍ତ୍ରୀଙ୍କ ସ୍ୱର ଶୁଣାଗଲା—"ଆରେ ବେକୁଫ୍, ଏବେ ମୋ ପିଠି ଉପରେ ଦୁଇଟା ଲୋକ ବସି ସାରିଲେଣି ।"

ସେଙ୍କେଟେଶ୍ୱ କହିଲେ—"ଅଳ୍ପ ସମୟ ଟିକିଏ ସହିଯାଆନ୍ତୁ । ଗାଡ଼ି ଚାଲିଲେ ସବୁ ଠିକ୍ ହୋଇଯିବ ।"

ଗାଡ଼ି ଚାଲିବାକୁ ଲାଗିଲା । କିଛି ସମୟ ପରେ ମନ୍ତ୍ରୀ ତଳୁ ଉଠି ଆସି ଗୋଟିଏ ଗଣ୍ଠିଲି ଉପରେ ବସି ପଡ଼ିଲେ । ସେଙ୍କେଟେଶ୍ୱ ତାଙ୍କୁ ଦେଖିଲେ ଏବଂ ସେ ସେଙ୍କେଟେଶ୍ୱଙ୍କୁ ଦେଖିଲେ । ମନ୍ତ୍ରୀଙ୍କର କାମିଜ୍‌ର ଗୋଟିଏ ହାତ କାନ୍ଧ ପାଖରୁ ଚିରିଯାଇ ବିଲ୍‌କୁଲ୍ ଗାଏବ୍ ହୋଇ ଯାଇଥିଲା । ଅବଶ୍ୟ ଆର ପାଖରେ ଥିବା ହାତଟି ଠିକ୍ ଥିଲା ।

ମନ୍ତ୍ରୀ କହିଲେ—"ଏକ ହାତଆ କାମିଜ୍‌ଟି ଭଲ ଦିଶୁନ। ଭାବୁଛି ଆଉପାଖଟା ଚିରିଦେବି।"

ସେକ୍ରେଟେରୀ କହିଲେ—"ସେ ଭୁଲ୍ କରନ୍ତୁ ନାହିଁ ଆଜ୍ଞା! ଡବାରୁ ଓହ୍ଲାଇବାବେଳେ ଆଉ ହାତଟିର ନିଶ୍ଚୟ ଦରକାର ପଡ଼ିବ। ଓହ୍ଲାଇଲା ବେଳେ ଆପଣଙ୍କ କାମିଜରୁ ଚିରିଯିବା ଲାଗି କିଛି ରହିବା ତ ଦରକାର।"

ମନ୍ତ୍ରୀ ମହାଶୟ କଥାଟା ବୁଝିଗଲେ। ଏହିଭଳି ଭାବରେ ଗାଡ଼ିରେ ଚଢ଼ିବା ଫଳରେ ତାଙ୍କର ଜ୍ଞାନୋଦୟ ହୋଇଯାଇଥିଲା।

ସାରା ଜୀବନରେ ପ୍ରଥମଥର ପାଇଁ ମନ୍ତ୍ରୀ ମହାଶୟ ଥାର୍ଡ଼କ୍ଲାସ* ଡବାରେ ଏକ ସାଧାରଣ ଯାତ୍ରୀପରି ଯାତ୍ରା କରୁଥିଲେ। ସେ ଏହି ଯାତ୍ରାରୁ ଆମୋଦ ଉଠେଇବାକୁ ଚାହୁଁଥିଲେ। ସେ ଆଶ୍ଚର୍ଯ୍ୟ ହୋଇ ଡବା ଭିତରେ ଚାରିଆଡ଼କୁ ଚାହିଁଲେ। ସମସ୍ତ ଡବାଟା ଏକ ଆତ୍ମା ଓ ହଜାରେ ଶରୀର ହୋଇ ରହିଥିଲା। ଲୋକେ ଏମିତି ଚାପିଚୁପି ହୋଇ ଠିଆ ହୋଇଥିଲେ ଯେ ଯେପରିକି ସବୁ ଯାତ୍ରୀ ମିଶି ଗୋଟାଏ ଶରୀରରେ ପରିଣତ ହୋଇଯାଇଛନ୍ତି। ଡବାର ଗୋଟିଏ କଡ଼ରେ ଥିବା ଜଣେ ଯାତ୍ରୀର ହୃତ୍‌ସ୍ପନ୍ଦନ ଆରକଡ଼ରେ ଥିବା ଯାତ୍ରୀ ପରିଷ୍କାର ଶୁଣିପାରୁଥିଲା। ଗୋଟିଏ କୋଣରେ ଜଣେ ଯାତ୍ରୀ କଡ଼ ଲେଉଟାଇଲେ ତାହା ସମୁଦ୍ରର ତରଙ୍ଗ ପରି ସମଗ୍ର ଡବା ଭିତରେ ଖେଳିଯାଇ ଡବାସାରା ଶୃଙ୍ଖଳ୍ୟ ସୃଷ୍ଟି କରୁଥିଲା। ପୂର୍ବପଟ କବାଟ ଦେଇ ପବନର ଗୋଟାଏ ଝାଙ୍କ ପଶିଆସିଲେ ଡବା ଭିତରେ ପବନ ପାଇଁ ସ୍ଥାନ କରିବାକୁ ପଶ୍ଚିମପଟେ କବାଟ ନିକଟରେ ଠିଆ ହୋଇଥିବା ଯାତ୍ରୀ ଡବା ବାହାରେ ନିଜେ ନିଜକୁ ଆନ୍ଦୋଳିତ କରୁଥିଲା। ଏଇ ସମୟରେ ଜଣେ ଯାତ୍ରୀର ପାଦ ଉପରେ ବାକ୍ସଟାଏ ପଡ଼ିଗଲା ଏବଂ ଡବାର ସବୁ ଯାତ୍ରୀ ସେ ଆଘାତର କଷ୍ଟ ଅନୁଭବ କରିଗଲେ। ମନ୍ତ୍ରୀ ମହାଶୟ କିଛି ସମୟ ପାଇଁ ଚିନ୍ତାକଲେ ଯେ ସମସ୍ତ ଦେଶ ଯଦି ଏହିପରି ସଂଗଠିତ ହୋଇପାରନ୍ତା ତେବେ ଦେଶ ଯେ କେତେ ଉପରକୁ ଉଠନ୍ତା କହିବାର ନୁହେଁ। ମନ୍ତ୍ରୀ ମହାଶୟ ଦେଖିଲେ ଜଣେ ଯାତ୍ରୀ ଦୁଇ ବର୍ଥରେ ନିଜ କହୁଣି ଭରାଦେଇ

* ବର୍ଣ୍ଣନା ସମୟରେ ରେଳବାଇରେ ଯୁ ୩ଶ୍ରେଣୀ ରହିଥିଲା

ଠିଆ ହୋଇଛି ଆଉ ତା ବୃଛପଟେ ଅନ୍ୟ ଯାତ୍ରୀମାନେ ଲଡାପର ଗୁଡ଼େଇ ହେଇ ରହିଚନ୍ତି । ତାହାର ମୁଣ୍ଡ ବର୍ଥରେ ଥୁଆ ହୋଇଥିବା ବେଡ଼ିଂତଳେ ରହିଯାଇଛି । ତା ଥୋଡ଼ିତଳେ ଆଉ ଜଣେ ଯାତ୍ରୀର ମୁଣ୍ଡ ରହିଛି । ତେଣୁ ସେ ନିଜ ବେକ ଗୋଟିଏ ପଟକୁ ମୋଡ଼ି ଠିଆ ହୋଇଛି । ଉପର ବର୍ଥରେ ଜଣେ ଯାତ୍ରୀ ସିଗାରେଟ ଲଟଗଇଛି ଆଉ ବାରମ୍ବାର ସିଗାରେଟର ଗୁଲ ସେଇ ଯାତ୍ରୀର କାନରେ ଝାଡ଼ୁଛି । ମନ୍ତ୍ରୀମହାଶୟ ତାଙ୍କ ଜୀବନରେ ପ୍ରଥମଥର ପାଇଁ କାନକୁ ଆସ୍‌ଟ୍ରେ ରୂପେ ବ୍ୟବହୃତ ହେଉଥିବାର ଦେଖିଲେ । ଯେଉଁ ଯାତ୍ରୀର କାନରେ ଗୁଲ ଝଡ଼ା ଯାଉଥିଲା ସେ କିଛି କହିପାରୁ ନଥିଲା କାହିଁକିନା ତା'ର ତଣ୍ଟି ଆଉ ଜଣେ ଯାତ୍ରୀର କହୁଣିରେ ଚପି ହୋଇଯାଇଥିଲା । ପୁଣି ଯେତେବେଳେ ଉପରେ ଥିବା ଯାତ୍ରୀ ବହୁତ ଗୁଲ ଝାଡ଼ିବା ପରେ ତା କାନରେ ସିଗାରେଟ ଗୁଞ୍ଜି ଲିଭେଇବାର ଚେଷ୍ଟାକଲା ସେ ଯନ୍ତ୍ରଣାରେ ଚିତ୍କାର କରି ଉଠିଲା କିନ୍ତୁ ତଥାପି ନିଜ ଜାଗାରୁ ଘୁଞ୍ଚିପାରିଲା ନାହିଁ ।

ଆଗରେ ଦୁଇଜଣ ଯାତ୍ରୀ ଜାକଜୁକ ହୋଇ ଠିଆ ହୋଇଥିଲେ । ଦୁଇଜଣଯାକଙ୍କୁ ସିଗାରେଟ ପିଇବାର ଇଚ୍ଛା ହେଲା । ଦୁଇଜଣଯାକ ଏକା ସାଙ୍ଗରେ ନିଜ ହାତକୁ ନିଜ ନିଜ ପ୍ୟାଣ୍ଟ ପକେଟରେ ପୂରେଇଲେ । ସେଥିରୁ ସିଗାରେଟ୍ ଡବା ବାହାରିବାରୁ ଦୁହେଁଯାକ ଆଶ୍ଚର୍ଯ୍ୟ ହୋଇଗଲେ ।

ଜଣେ କହିଲା, "ମୁଁ ତ ଗୃଡମିନାର ଖାଏ, ଏ ବର୍କଲେ ଡବା ମୋ ପକେଟରେ ଆସିଲା କୁଆଡ଼ୁ !" ଅନ୍ୟଜଣକ କହିଲା, "ମୁଁ ତ ବର୍କଲେ ପିଏ, ଏ ଚ୍ଚରମିନାର ଡବା କୁଆଡ଼ୁ ଆସିଲା ।"

ଦୁଇଜଣଯାକ ଆଶ୍ଚର୍ଯ୍ୟ ହୋଇ ପୁଣି ନିଜ ନିଜ ହାତକୁ ପକେଟରେ ଭର୍ତ୍ତି କଲେ କିନ୍ତୁ ନିଜ ନିଜ ହାତ ଆଡ଼କୁ ଚାହିଁବାରୁ ଜଣାଗଲା ଯେ ଦୁହିଁଙ୍କ ହାତ ପରସ୍ପରର ପକେଟରେ ଭର୍ତ୍ତି ହେଉଛି ।

ଦୁହେଁଯାକ ହସିପକାଇ କହିଲେ "ଠିକ୍ ଅଛି, ମୋ ପ୍ୟାଣ୍ଟ ପକେଟ ତୁମେ ବ୍ୟବହାର କର ଓ ତୁମର ମୁଁ ବ୍ୟବହାର କରେ ।"

ଏଇ ସମୟରେ ଜଣେ ଯାତ୍ରୀ ଅନ୍ୟ ଯାତ୍ରୀମାନଙ୍କ ମୁଣ୍ଡ ଉପରେ ଗୁଳି ଗୁଳି ଡବାର ପାଇଖାନା ପାଖରେ ପହଞ୍ଚିଲା । ସେ ପାଇଖାନା କବାଟରେ ଜୋରରେ ଧକ୍କା ମାରିବାକୁ ଲାଗିଲା । ତା ଭିତରୁ ତିନି ଚାରିଜଣ ଯାତ୍ରୀଙ୍କ ଶବ୍ଦ ଶୁଣାଗଲା, "କିଏ !"

ଯାତ୍ରୀ ଜଣକ କହିଲା, "ବାହାରକୁ ଆସ । ମୁଁ ଭିତରକୁ ଯିବି ।" ଭିତରୁ ଏକା ସାଙ୍ଗରେ ଅନେକ ଯାତ୍ରୀ କହିଲେ, "ଆଉ କୌଣସି ପାଇଖାନାକୁ ଯାଅ; ଏ ପାଇଖାନା ରିଜର୍ଭ ଅଛି ।"

ଯାତ୍ରୀ କହିଲେ,"ପାଇଖାନା କିପରି ରିଜର୍ଭ ହୋଇପାରିବ ?"

ଭିତରୁ ଶୁଣାଗଲା, "ଆମେ ନାଳରକ୍ତ ଝାଡ଼ା ରୋଗୀ, ତେଣୁ ଆମେ ବିଶେଷକରି ଏଇ ପାଇଖାନା ରିଜର୍ଭ କରିଚୁ ।"

ଯାତ୍ରୀଜଣକ ନିରୁତ୍ତର ହୋଇଗଲା ଏବଂ ଲୋକଙ୍କ ମୁଣ୍ଡ ଉପରେ ଗୁଳିକରି ଯାଇ ଡବାର ଗୋଟିଏ ପଙ୍ଖାରେ ଝୁଲି ଠିଆହେଲା ।

ଜଣେ କେହି କହିଲା, "ଭାଇ, ପଙ୍ଖା ଖୋଲ, ଖୁବ୍ ଗରମ ହଉଛି । ଆଉ ଜଣେ ଯାତ୍ରୀ ପଙ୍ଖାର ବୋତାମ ଟିପିଲା । ତା ଫଳରେ ପଙ୍ଖାର ପାତ ତ ହଲିଲା ନାହିଁ, ଅବଶ୍ୟ ପଙ୍ଖା ଚାରିପଟେ ଥିବା ଜାଲିଖୋଳ ବାମରୁ ଡାହାଣ ଓ ଡାହାଣରୁ ବାମ ହଲିବାକୁ ଲାଗିଲା । ଆଉ ତା ସାଙ୍ଗରେ ସେ ପଙ୍ଖାରେ ଝୁଲି ରହିଥିବା ଯାତ୍ରୀଜଣକ ମଧ୍ୟ ଝୁଲିବାକୁ ଲାଗିଲା ।

ଝୁଲୁଥିବା ଯାତ୍ରୀଜଣକ ଚିତ୍କାର କରି କହିଲା, "ଆବେ ପଙ୍ଖା ବନ୍ଦକର, ତା ପାତ ତ ଘୂରୁନାହିଁ । ପବନ ଆସିବାର ତ ପ୍ରଶ୍ନ ନାହିଁ । ଖାଲି ଖୋଳଟା ହଲୁଚି ଆଉ ଖୋଳ ସାଙ୍ଗରେ ମୁଁ ହଲୁଚି ।"

ତଳେ ବସିଥିବା ଯାତ୍ରୀମାନେ କହିଲେ, "ପଙ୍ଖା ବନ୍ଦକର ନାହିଁ । ପଙ୍ଖାର ଖୋଳ ସାଙ୍ଗରେ ଏ ଲୋକଟି ହଲିବାରୁ କିଛି ତ ପବନ ହଉଚି ।"

ଏତିକରେ ଆଗରେ ବସିଥିବା ଜଣେ ଯାତ୍ରୀ ବଡ଼ କଷ୍ଟରେ କଡ଼ ମୋଡ଼ ହୋଇ କହିଲ, "ବାପରେ, ଆମ ରେଳବାଇର କେବେ ସୁବ୍ୟବସ୍ଥା ହେବ କେଜାଣି ।"

ଆଉ ଜଣେ କହିଲ—"କଣ ଆଜ୍ଞା ଠିକ୍ ହେବ । ଆମ ରେଳବାଇ ମନ୍ତ୍ରୀ ତ ଖାଲି ବଡ଼ ବଡ଼ କଥା କହନ୍ତି । ପହଁରଦିନ ତାଙ୍କ ବକ୍ତୃତା ଖବରକାଗଜରେ ବାହାରିଥିଲ । ମନ୍ତ୍ରୀ ମହାଶୟ କହୁଛନ୍ତି ଦେଶରେ ଟ୍ରେନ୍ ଜରିଆରେ ହିଁ ସାମ୍ୟବାଦ ଆସିବ ।"

ତୃତୀୟ ଯାତ୍ରୀ କହିଲ, "ଭଗବାନ ସାମ୍ୟବାଦକୁ ରକ୍ଷାକରନ୍ତୁ । ଆମ ଦେଶରେ ସାମ୍ୟବାଦ ବଳଦଗାଡ଼ିରେ ବସି ଆସିଲେ ଭଲହେବ । 'ରେଳଗାଡ଼ିରେ ଆସିଲେ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ବେଳକୁ ତାର ଅବସ୍ଥା ଆଉ ନଥିବ ।"

ଚତୁର୍ଥ ଯାତ୍ରୀ କହିଲ, "ଆପଣ ମନ୍ତ୍ରୀ ମହାଶୟଙ୍କ ଉକ୍ତିର ଉଦ୍ଦେଶ୍ୟ ବୁଝିଲେ ନାହିଁ । ସାମ୍ୟବାଦ ରେଳଗାଡ଼ିରେ ହିଁ ଆସିବ କିନ୍ତୁ ୧ମ ଶ୍ରେଣୀ ଡବାରେ ଆସିବ । ବୁଝିଲେ, ଆମ ସାମ୍ୟବାଦ ସହ ୩ୟ ଶ୍ରେଣୀ ଡବାର କି ସମ୍ପର୍କ ?"

ମନ୍ତ୍ରୀ ମହାଶୟ ଏ କଥାବାର୍ତ୍ତା ଶୁଣି ହଠାତ୍ ରାଗିଗଲେ । ସେ ହଠାତ୍ କହିପକାଇଲେ, "ଆପଣମାନେ ଭୁଲ ବୁଝିଲେ । ମୋ କହିବାର ଉଦ୍ଦେଶ୍ୟ ଏହା ନୁହେଁ ବରଂ—"

ସେ ଆଉ କିଛି କହିବାକୁ ଯାଉଁଥିଲେ କିନ୍ତୁ ସେକ୍ରେଟାରୀ ସାଙ୍ଗେ ସାଙ୍ଗେ ତାଙ୍କ ପାଟିରେ ହାତ ଦେଇଦେଲେ ଆଉ କାନରେ କହିଲେ, "ଆଜ୍ଞା, ଆପଣ ଏ କଅଣ କରୁଛନ୍ତି । ଆପଣ ତ ବର୍ତ୍ତମାନ ଛଦ୍ମ ବେଶରେ ଅଛନ୍ତି ।"

ମନ୍ତ୍ରୀ ମହାଶୟଙ୍କୁ ହଠାତ୍ ଏ ବିଷୟ ମନେପଡ଼ିଗଲା ଆଉ ସେ ନିଜକୁ ସମ୍ଭାଳି ନେଲେ ।

ଏଇ ସମୟରେ ଗାଡ଼ି ଗୋଟାଏ ପୋଲରେ ପଡ଼ିଲା । ହଠାତ୍ ଏକ ଧୂମ୍ କରି ଶବ୍ଦ ଶୁଭିଲା। ଯାତ୍ରୀମାନଙ୍କ ଚିତ୍କାରରେ ସମଗ୍ର ପରିବେଶ କମ୍ପି ଉଠିଲା। ଆଉ ଟ୍ରେନ୍ ନଦୀଭିତରକୁ ଖସିପଡ଼ିବାକୁ ଲାଗିଲା। ମନ୍ତ୍ରୀ ମହାଶୟ ଭୀତତ୍ରସ୍ତ ହୋଇ ହଠାତ୍ ତାଙ୍କ ସେକ୍ରେଟାରୀଙ୍କୁ ଜାବୁଡ଼ି ଧରିଲେ କିନ୍ତୁ ସେକ୍ରେଟାରୀ ତାଙ୍କୁ ପେଲିଦେଇ କହିଲେ, "ଏବେ ମୋ ପାଖକୁ ଆସନ୍ତୁ ନାହିଁ। ମରଣର ବେଳ ଆସିଗଲା। ତୁମେ ମୋ ମନ୍ତ୍ରୀ ନୁହଁ କି ମୁଁ ତୁମ ସେକ୍ରେଟାରୀ ନୁହେଁ, ନିଜ ଜୀବନ ନିଜେ ରକ୍ଷାକର, ମୁଁ ଚାଲିଲି।" ଏତିକି କହି ସେକ୍ରେଟେରୀ ଝରକା ବାଟେ ନଦୀ ଭିତରକୁ ଡେଇଁ ପଡ଼ିଲେ ।

ମନ୍ତ୍ରୀ ମହାଶୟ ମଧ୍ୟ ଖୁବ୍ ଜୋର୍‌ରେ ଚିତ୍କାରଟାଏ କଲେ ଏବଂ ସେଇ ଚିତ୍କାର ଶବ୍ଦରେ ତାଙ୍କ ଆଖି ଖୋଲିଗଲା। ଖୋଲିବାରୁ ଜଣାଗଲା ଯେ ସେ ତ ନିଜ ଶୋଇବାଘରେ ଏକ ଆରାମଦାୟକ ଶଯ୍ୟାରେ ଶୋଇଛନ୍ତି ଏବଂ ଦୂରରୁ କୁକୁଡ଼ା ରାବିବାର ଶବ୍ଦ ଆସୁଛି ।

ମନ୍ତ୍ରୀଙ୍କୁ ବହୁତ ବେଳଯାଏ ଆଉ ନିଦ ଆସିଲା ନାହିଁ । ସେଇ ଭୟଙ୍କର ସ୍ୱପ୍ନ ଦେଖି ତାଙ୍କ ଅବସ୍ଥା ଶୋଚନୀୟ ହୋଇଯାଇଥିଲା ।

ପରଦିନ ସେ ତାଙ୍କ ଅଫିସକୁ ଗଲାବେଳେ ତାଙ୍କ ମାନସିକ ଅବସ୍ଥା ଖୁବ୍ ଖରାପ ଥିଲା। ତାଙ୍କ ସେକ୍ରେଟେରୀ କୋଠରିକୁ ପଶିବା ମାତ୍ରେ ସେ ଗର୍ଜିଉଠି କହିଲେ, "ତୁମେ ବର୍ତ୍ତମାନଠାରୁ ମୋ ଆଗରୁ ଦୂର ହୋଇଯାଅ। ମୋର ତୁମଭଳି କୃତଘ୍ନ ସେକ୍ରେଟାରୀର ଆବଶ୍ୟକ ନାହିଁ। ତୁମକୁ ଆଜିଠାରୁ ଡିସ୍‌ମିସ୍ କରାଗଲା। ଦୂର ହୁଅ ଏଠୁ।"

ସେକ୍ରେଟାରୀ କହିଲେ, "କିନ୍ତୁ ମୋ ଦୋଷ କଅଣ ?" ମନ୍ତ୍ରୀ କହିଲେ, "ମୁଁ କିଛି ଶୁଣିବାକୁ ଚାହେଁନା। ମୋ ଆଗରୁ ଚାଲିଯାଅ।"

ଆଉ ସେକ୍ରେଟେରୀ ଚୁପ୍‌ଚାପ୍ ମନ୍ତ୍ରୀ ମହାଶୟଙ୍କ କୋଠରିରୁ ବାହାରି ଚାଲିଆସିଲେ। ତାଙ୍କୁ ଜଣାଗଲା ଯେ ଯେପରି ସତରେ କୌଣସି ଭୟଙ୍କର ସ୍ୱପ୍ନ ଦେଖୁଛନ୍ତି ।